# ଭଞ୍ଜ-କାବ୍ୟ
# କାହାଣୀ ମାଳା

( ପ୍ରଥମ ଖଣ୍ଡ )

ଭଗୀରଥି ନେପାକ



ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ-୨

# ଭଞ୍ଜ-କାବ୍ୟ କାହାଣୀମାଳା

ସଂପାଦନା :
ଭଗୀରଥି ନେପାକ

ପ୍ରକାଶକ :
ଶ୍ରୀ ଗୋବର୍ଦ୍ଧନ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
କଟକ—୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୨

ମୁଦ୍ରଣ :
ପାୟୋନିଅର ପ୍ରେସ, କଟକ-୮

ମୂଲ୍ୟ :
ପାଞ୍ଚ ଟଙ୍କା

Bhanja-Kabya Kahanimala
By
B. Nepak
1982

Published by :
Sri G. C. Patra
Orissa Book Store
Cuttack-753002

Printed at :
Pioneer Press
Shaikh Bazar, Cuttack-8

Price : Rs. 5-00

## ବହି ବିଷୟରେ······

ବେଳେ ବେଳେ ଲେଖକ ଓ ପ୍ରକାଶକ ଉଭୟଙ୍କ ଏକାଠି ହୋଇ କଥାବାର୍ତ୍ତା କଲେ, ଅନେକ ନୂଆ କଥା, ନୂଆ ଯୋଜନା ଜନ୍ମ ନିଏ — ସାହିତ୍ୟର ଆଉ ଏକ ଦିଗ ଆବିଷ୍କୃତ ହୁଏ । ଲେଖକ, ପ୍ରକାଶକ, ପାଠକ ଏଇ ତିନିଙ୍କର ଉପକୃତ ହୁଅନ୍ତି ।

ସେ ଦିନ ଏହିପରି ଏକ ଆଲୋଚନା ଅବସରରେ, ଓଡ଼ିଶାର ଅନ୍ୟତମ ପ୍ରମୁଖ ପ୍ରକାଶନ ସଂସ୍ଥା 'ଓଡ଼ିଶା ବୁକ୍ ଷ୍ଟୋର୍'ର ଅଧ୍ୟକ୍ଷ ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ର ପ୍ରସ୍ତାବ ଦେଲେ, କେମିତି ହୁଅନ୍ତା, ଯଦି ଓଡ଼ିଶାର ପ୍ରସିଦ୍ଧ କବି ଓ ଲେଖକଙ୍କର ରଚନାବଳୀକୁ ସଂକ୍ଷେପରେ ଓ ସରଳ ଭାଷାରେ ପ୍ରକାଶ କରାଯାନ୍ତା ? ତାଙ୍କର ଏ ପ୍ରସ୍ତାବ ମୋ ମନକୁ ବେଶ୍ ପାଇଲା ଓ ସଙ୍ଗେ ସଙ୍ଗେ କାର୍ଯ୍ୟ ଆରମ୍ଭ କରିଦେଲି । ଯଦିଓ ଏ କାର୍ଯ୍ୟ କମ୍ ଆୟାସସାଧ୍ୟ ନୁହେଁ, ତଥାପି ଏପରି ନୂଆ କାମରେ ମନ ଲଗାଇଲେ ଯେ ଯଥେଷ୍ଟ ଆନନ୍ଦ ମିଳେ ସେ କଥା ମୁଁ ଅନୁଭବ କରୁଛି ।

'ଭଞ୍ଜ କାବ୍ୟ କାହାଣୀମାଳା' ବିସ୍ତୃତ ଯୋଜନାର ଏକ ଅଙ୍ଗ ମାତ୍ର । ଏହାର ସଫଳତା ଓ ବିଫଳତା ଉପରେ ଲକ୍ଷ୍ୟ ରଖି ଅନ୍ୟ କାର୍ଯ୍ୟ ହାତକୁ ନେବାର ପରିକଳ୍ପନା ରହିଛି । ପାଠକଙ୍କର ମନୋରଞ୍ଜନ କରିପାରିଲେ, ଏ ଉଦ୍ୟମ ସଫଳ ହେଲା ବୋଲି ବୁଝି ନିବି । ଇତି ।

ବିନୀତ

**ଭଗୀରଥି ନେପାକ**

# ଏଥିରେ ଅଛି

# ଭଞ୍ଜକବିଙ୍କ କାବ୍ୟ ନିରୂପଣ

କବି ଉପେନ୍ଦ୍ରଭଞ୍ଜ 'କବି ସମ୍ରାଟ' ଭାବରେ ସର୍ବଜନ ପରିଚିତ ।

ଗତ ଷୋଡ଼ଶ ଶତାବ୍ଦୀଠାରୁ ଆରମ୍ଭ କରି ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସୁଦୀର୍ଘ ଦୁଇଶତ ବର୍ଷ ମଧ୍ୟରେ ଓଡ଼ିଆ ରୀତିକାବ୍ୟର ଉନ୍ମେଷ ଓ ବିକାଶ ଘଟିଥିଲା । ସଂସ୍କୃତ କାବ୍ୟଶୈଳୀର ଅନୁକରଣରେ ଏହି ଯୁଗର ସାହିତ୍ୟିକ ସୃଷ୍ଟି ଆତ୍ମପ୍ରକାଶ କରି ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଥିଲା ।

ଗୋଟିଏ ଦିଗରେ ସଂସ୍କୃତ କାବ୍ୟାଦର୍ଶ ଏବଂ ଅନ୍ୟ ଏକ ଦିଗରେ ମାନବିକ ପ୍ରେମର ପୁଙ୍ଖାନୁପୁଙ୍ଖ ବିଚାର ଓ ବିଶ୍ଳେଷଣର ଅଭିପ୍ସା ଆଲୋଚ୍ୟ ଯୁଗର ବିଦଗ୍ଧ ସ୍ରଷ୍ଟାମାନଙ୍କୁ 'ଶୃଙ୍ଗାର ରସାତ୍ମକ' କାବ୍ୟ ରଚନା କରିବା ନିମନ୍ତେ ବିଶେଷ ଆକୃଷ୍ଟ କରିଥିଲା । ମଧ୍ୟଯୁଗୀୟ କାବ୍ୟକର୍ତ୍ତାଗଣ ସ୍ୱୀୟ କାବ୍ୟାବଳୀକୁ ଶୃଙ୍ଗାର ରସାତ୍ମକ କରିବା ନିମନ୍ତେ ସମଧିକ ପ୍ରୟାସ କରିଥିଲେ ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ କହନ୍ତି, "ପଞ୍ଚସଖାଙ୍କଠାରୁ ଧନଞ୍ଜୟ ଭଞ୍ଜଙ୍କ ପର୍ଯ୍ୟନ୍ତ ପ୍ରାୟ ଦେଢ଼ଶହ ବର୍ଷ ଭିତରେ ଭକ୍ତି

ଯୁଗର ବିଶେଷ ପରିବର୍ତ୍ତନ ଦେଖାଯାଇ ନାହିଁ; ବିନ୍ଦୁ ଭିଟନାରେ କବିତ୍ତ୍ୱ ଅପେକ୍ଷା ଧର୍ମଶତନ୍ତ୍ରୀର ପ୍ରାଧାନ୍ୟ, ଭାଷାର ସ୍ୱାଭାବିକ ସାରଲ୍ୟ, ଶବ୍ଦାଡମ୍ବର ହୀନତା, ଭକ୍ତିର ସ୍ୱାଭାବିକ ସ୍ଫୂର୍ତ୍ତି ପ୍ରଭୃତି ଦେଖାଯାଉଥିଲା । ଧନଞ୍ଜୟଙ୍କଠାରୁ ସାହିତ୍ୟର ଧାରା ପରିବର୍ତ୍ତିତ ହୋଇଗଲା । ଧନଞ୍ଜୟ, ଲୋକନାଥ, ଘନକୃଷ୍ଣ, ଉପେନ୍ଦ୍ର ପ୍ରଭୃତି ଏକ ସମୟରେ ନୂତନଧାରା ସୃଷ୍ଟି କଲେ । ଧନଞ୍ଜୟଙ୍କ ପୂର୍ବରୁ ଯେଉଁ କେତେଜଣ ଆଳଙ୍କାରିକ କବି କାବ୍ୟ ରଚନା କରିଥିଲେ, ସେମାନଙ୍କ ପ୍ରଭାବ ଏବଂ ଶାନ୍ତ ଭର୍ଚନାର କ୍ଷୀଣ ପ୍ରବାହକୁ କେବଳ ବଞ୍ଚାଇ ରଖିଥିଲା । ଧନଞ୍ଜୟାଦିଙ୍କର ଉଦ୍ୟମ ଏକ ସମୟରେ କାର୍ଯ୍ୟ କରିଥିବାର ଧାରା ନୂତନରୂପ ଧାରଣ କରିଥିବା ସ୍ୱାଭାବିକ । × × ଏହି ନୂତନ ସାହିତ୍ୟ ଧାରାକୁ ଧନଞ୍ଜୟ ଏ ଯୁଗରେ ଆରମ୍ଭ କଲେ । ଉପେନ୍ଦ୍ର ଏହାକୁ ବଳିଷ୍ଠ କଲେ । ଧନଞ୍ଜୟଙ୍କଠାରୁ ଆରମ୍ଭ କରି ଖ୍ରୀ: ୧୮୭୭ ପର୍ଯ୍ୟନ୍ତ ମଧ୍ୟ ସମୟକୁ 'ରୀତିଯୁଗ' ବା 'କାବ୍ୟଯୁଗ' ବା '**ଉପେନ୍ଦ୍ର ଯୁଗ**' ବୋଲାଯାଇପାରେ ।"

ଅଥଚ ଏହିପରି ଜଣେ 'ଯୁଗ ପ୍ରବର୍ତ୍ତକ' ଓ 'କବି ସମ୍ରାଟ'ଙ୍କ ଜୀବନକାଳ ନିର୍ଦ୍ଦିଷ୍ଟରୂପେ ସ୍ୱୀକୃତ ହୋଇପାରିନାହିଁ ।

**ଡକ୍ଟର ହରେକୃଷ୍ଣ** ମହତାବ ତାଙ୍କର ଓଡ଼ିଶା ଇତିହାସ ଗ୍ରନ୍ଥର ୪୧୭ ପୃଷ୍ଠାରେ କହନ୍ତି, "ଉପେନ୍ଦ୍ର ଭଞ୍ଜ ଖୋର୍ଦ୍ଧା ରାଜା ଦିବ୍ୟ ସିଂହଦେବଙ୍କ (୧୬୯୩-୧୭୨୦) ସମସାମୟିକ ଥିଲେ ।

**ସ୍ୱର୍ଗତ ବିଚ୍ଛନ୍ଦଚରଣ** ତାଙ୍କର 'କବି ସମ୍ରାଟ ଉପେନ୍ଦ୍ରଭଞ୍ଜ' ସନ୍ଦର୍ଭରେ (ଭଞ୍ଜପ୍ରଭା : ୧୯୫୩) କହନ୍ତି, "ଆଜକୁ ୨୬୮ ବର୍ଷ ତଳେ ଅର୍ଥାତ୍ ୧୬୮୫ ଖ୍ରୀଷ୍ଟାବ୍ଦରେ ଗଞ୍ଜାମ ଜିଲ୍ଲାର ନିଖିଳ-ନିସର୍ଗ-

ଲାବଣ୍ୟ ମଣ୍ଡିତ ଘୁମୁସର ରାଜ୍ୟର କୁଲାଡ ଦୁର୍ଗରେ କଳଙ୍କ-ମହୁଡମଣି କବି ସାର୍ବଭୌମ କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଆବିର୍ଭାବ ହୋଇଥିଲା ।"

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀଗ୍ରନ୍ଥମାଳାର ଲବଣ୍ୟବତୀ କାବ୍ୟର ମୁଖବନ୍ଧରେ କହନ୍ତି, "ଉପେନ୍ଦ୍ର ସ୍ୱକୃତ ରସଲେଖା କାବ୍ୟର ଉପସଂହାରରେ ଲେଖିଅଛନ୍ତି, "ଦିବ୍ୟସିଂହ ଗଜପତି ଅଙ୍କ ସପତ ବଂଶଜ ଶେଷଦିନ ଶେଷ ଏହୁ ଗୀତ ।" ଦିବ୍ୟସିଂହ ଦେବ ପ୍ରାୟ ୧୬୯୨-୧୭୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉତ୍କଳ ଧରାମଣ୍ଡଳର ଅଧୀଶ୍ୱର ଥିଲେ । ୧୭୧୪ ଖ୍ରୀଷ୍ଟାବ୍ଦରେ ରସଲେଖା ଗ୍ରନ୍ଥର ରଚନା ଶେଷ ହୋଇଥିବା ହେତୁ ଉପେନ୍ଦ୍ର ସମ୍ଭବତଃ ୧୬୭୦-୧୭୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ ।"

ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ ମତ ହେଲା, "ଉପେନ୍ଦ୍ରଭଞ୍ଜ ୧୬୭୦ ଖ୍ରୀଷ୍ଟାବ୍ଦରେ କୁଲାଡ ଗଡ଼ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ନୀଳକଣ୍ଠଭଞ୍ଜ, ପିତାମହ ପ୍ରତାପ ଧନଞ୍ଜୟଭଞ୍ଜ ଓ ପିତାମହୀ ମଣ୍ଡାଦେବୀ ପ୍ରଭୃତି କୁଲାଡ ଗଡ଼ରେ ହିଁ ବାସ କରୁଥିଲେ ।" (ଉପେନ୍ଦ୍ରଭଞ୍ଜ : ପୃ ୭)

ଉପେନ୍ଦ୍ରଭଞ୍ଜଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କରେ ନିର୍ଦ୍ଦିଷ୍ଟ ଉପାଦାନ ଏ ପର୍ଯ୍ୟନ୍ତ ମିଳି ନଥିଲେ ମଧ୍ୟ ସେ ଦିବ୍ୟସିଂହ ଦେବଙ୍କ ସମୟରେ ଜୀବିତ ଥିବା ସ୍ୱତଃ ସିଦ୍ଧ ।



# ସୃଷ୍ଟି ସଂପଦ

ଉପେନ୍ଦ୍ର ଭଞ୍ଜଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କରେ ଯେପରି ନିର୍ଦ୍ଦିଷ୍ଟ ଉପାଦାନ ଏ ପର୍ଯ୍ୟନ୍ତ ମିଳି ନାହିଁ, ତାଙ୍କର ରଚନାବଳୀ ସଂପର୍କରେ ସେହିପରି ନିର୍ଦ୍ଦିଷ୍ଟ ତାଲିକା ପ୍ରସ୍ତୁତ କରାଯାଇ ପାରି ନାହିଁ । ଯଦିଓ ଉପେନ୍ଦ୍ରଭଞ୍ଜ ତପାପ୍ତ ଲେଖାବଳୀ ସମ୍ବନ୍ଧରେ 'ଗୀତାଭିଧାନ' ଗ୍ରନ୍ଥରେ ଏକ ତାଲିକା ପ୍ରଦାନ କରିଛନ୍ତି, ତାହା ଭଞ୍ଜଙ୍କର ରଚିତ କାବ୍ୟାବଳୀର ସଂପୂର୍ଣ୍ଣ ତାଲିକା ନୁହେଁ ବୋଲି ଜଣାଯାଇଛି । କାରଣ ତହିଁରେ କବି ଯେତୋଟି କାବ୍ୟର ନାମୋଲ୍ଲେଖ କରିଛନ୍ତି, ତା' ଅପେକ୍ଷା ଅଧିକ କେତୋଟି କାବ୍ୟ କବିଙ୍କ ନାମରେ ଭଣିତ ହୋଇ ବର୍ତ୍ତମାନ ପ୍ରକାଶ ପାଇ ସାରିଲଣି । ସ୍ୱୀୟ ରଚନାବଳୀ ସଂପର୍କରେ କବି ସମ୍ରାଟ ତାଙ୍କର 'ଚିତ୍ରକାବ୍ୟବନ୍ଧୋଦୟ' ଗ୍ରନ୍ଥର ପ୍ରଥମ ଛାନ୍ଦରେ ଉଲ୍ଲେଖ କରିଛନ୍ତି—

"ଏଣୁ ଏ କବି ବିସ୍ମରଇ ଚିତ୍ତେ
କଲି ମୁଁ ଅନେକ ପ୍ରକାଶ ଗୀତେ । ୯ ।

ଅଶେଷ ଚଉତିଶା ଚଉପଦୀ
ତାହା କେତେ ଯେ ଜନିବ ସମ୍ପାଦି । ୧୦ ।

ଗାହା ଦୋହା ଷୋଡଶେନ୍ଦୁ ଛପୋଇ
ଇତ୍ୟାଦି କବିରୁ ଗଣନା ନାହିଁ । ୧୧ ।

ରସକୁମ୍ଭ ବିଷୟ ଯେତେ ଗ୍ରନ୍ଥ
ଚଉତିଶ ଛାନ୍ଦୁଁ କିନ୍ତୁ ଲେଖେ ଏଥ । ୧୨ ।

ପୂର୍ଣ୍ଣ-ସୁର କଳ୍ପନା-ମାଧୁରୀ
ଗୁରୁ ଶିଷ ଲେଖା ପ୍ରେମ ମଞ୍ଜୁରୀ । ୧୩ ।

ରସଲେଖା ନାମ କଲା ରଚିତ
ମନୋରମା ପ୍ରେମଲତା ସୁଗୀତ । ୧୪ ।

ଭାବବତୀ ମୁକ୍ତାବତୀ ପ୍ରମାଣ
ବରଙ୍ଗ ଲୀଳା ଯେ ଛନ୍ଦ ଭୂଷଣ । ୧୫ ।

ଷଡଋତୁ କଳା କଉତୁକର
କ ନମ୍ରମ ସାଦ୍ୟ ସୁଭଦ୍ରା ସାର । ୧୬ ।
ବୈଦେହୀଶ ବିଳାସ ସେତ୍ରି କାବ୍ୟ
ପ୍ରସିଦ୍ଧ ଅବନା ଦ୍ୱାଦଶ ଗ୍ରନ୍ଥ । ୧୭ ।

ରାମଲୀଳା ମୃତ ଶେଷ ଚରିତ
ପ୍ରେମ ସୁଧାନିଧି ଯମକେ ସ୍ଥିତ । ୧୮ ।

ରସିକ ହାରାବଳୀ ନାମେ ଗୀତ
କୁଞ୍ଜ ବିହାରୀଜ ଶ୍ୟାମ ଚରିତ । ୧୯ ।

ଅଲଙ୍କାର ସତି ରସ ପଞ୍ଚକ
ଲାବଣ୍ୟବତୀ ରସିକ ତୋଷକ । ୨୦ ।

ପୁରୁଷୋତ୍ତମ ମାହାତ୍ମ୍ୟ ରଚନା
ନାନାକୋଷ ଶବ୍ଦେ ଗୀତାଭିଧାନ । ୨୧ ।

ଗ୍ରନ୍ଥ କୋଟିଚାରି ଚନ୍ଦ୍ରମା ପରି
ଯା' ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । ୨୨ ।
ତ୍ରୈଲୋକ୍ୟ ମୋହିନୀ ଆଜ ଯେ ଗୀତ
ନିର୍ମିତ ଗ୍ରନ୍ଥ ପୋଥି ପ୍ରାଞ୍ଚ ସାତ । ୨୩ ।

ପଣ୍ଡିତ ବିନାୟକ ମିଶ୍ର ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥରେ କହନ୍ତି, "ଉପେନ୍ଦ୍ରଭଞ୍ଜ ଯେତେ କାବ୍ୟ ରଚନା କରିଥିଲେ, ତହିଁର ତାଲିକା ସେ ନିଜର 'ଚିତ୍ର କାବ୍ୟ ବନ୍ଧୋଦୟ'ରେ ଦେଇଛନ୍ତି । ଶ୍ରେଣୀ ବିଭାଗ କରି ଉକ୍ତ ତାଲିକା ନିମ୍ନରେ ପ୍ରଦତ୍ତ ହୋଇଛି ।"

(୧) **ଗୀତିକା** :—ଛ' ପୋଇ, ଗାହା, ଦୋହା, ଦଶପୋଇ, ଚଉତିଶା, ଚଉପଦୀ ଚନ୍ଦ୍ର, ଚଉପଦୀ ଭୂଷଣ, ଯମକରାଜ ଚଉତିଶା ।

(୨) **ପୌରାଣିକ କାବ୍ୟ** :— ସୁଭଦ୍ରା ପରିଣୟ, ଅବନାରସ ତରଙ୍ଗ, ବ୍ରଜଲୀଳା, ରାମଲୀଳାମୃତ, କୁଞ୍ଜବିହାର, ରାହାସଲୀଳା, କଳାକଉତୁକ, ବୈଦେହୀଶ ବିଳାସ ।

(୩) **କାଳ୍ପନିକ କାବ୍ୟ** :— ହେମମଞ୍ଜରୀ, ଚିତ୍ରଲେଖା, ଲାବଣ୍ୟବତୀ, ରସଲେଖା, ସୁବର୍ଣ୍ଣରେଖା, କାମକଳା, ମନୋରମା, ପ୍ରେମଲତା, ଭାବବତୀ, ମୁକ୍ତାବତୀ, ପ୍ରେମସୁଧାନିଧି, ରସିକ ହାରାବଳୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ତ୍ରୈଲୋକ୍ୟ ମୋହିନୀ, ଚନ୍ଦ୍ରକଳା, ଚନ୍ଦ୍ରରେଖା, ଇଚ୍ଛାବତୀ, କଳାବତୀ, ଶଶିରେଖା, ଶୋଭାବତୀ ଓ ରସମଞ୍ଜରୀ ।

(୪) ଆଳଙ୍କାରିକ କାବ୍ୟ :— ଛାନ୍ଦଭୂଷଣ, ଶବ୍ଦକାବ୍ୟ ବର୍ଣ୍ଣୋଦୟ ରସ ପଞ୍ଚକ ।

(୫) ବିବିଧ ରଚନା :- ଷଷ୍ଠିରତ୍ନ, ଗୀତାଭିଧାନ, ପୁରୁଷୋତ୍ତମ ମାହାତ୍ମ୍ୟ ।

ଏହିପରି ମୋଟ ୪୩ ଖଣ୍ଡ ।

ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର 'ଓଡ଼ିଶା ଇତିହାସ'ରେ ୬୨ ଖଣ୍ଡ ପୁସ୍ତକର ନାମ ତାଲିକା ଦେଇ କହିଛନ୍ତି, ରସୁଲ କୋଣ୍ଡାରେ ସ୍ଥାପିତ ଭଞ୍ଜ ସାହିତ୍ୟ ପରିଷଦ, ଉପେନ୍ଦ୍ର ଭଞ୍ଜଙ୍କ ନିମ୍ନଲିଖିତ ଲେଖାମାନ ସଂଗ୍ରହ କରିଛନ୍ତି । ଏଥିରୁ କେତେକ ପ୍ରକାଶିତ ହୋଇଛି ଓ ଅନେକ ଅପ୍ରକାଶିତ ଅଛି । ପ୍ରକାଶିତ ଓ ଅପ୍ରକାଶିତ ଲେଖାମାନଙ୍କର ତାଲିକା— (୧) ବୈଦେହୀଶ ବିଳାସ (୨) ପ୍ରେମସୁଧାନିଧି (୩) ଚୌପଦୀ ଭୂଷଣ (୪) ଶବ୍ଦକାବ୍ୟ ବର୍ଣ୍ଣୋଦୟ (୫) ଚୌପଦୀ ଚନ୍ଦ୍ର (୬) ଯମକରାଜ ଚଉତିଶା (୭) ବଜାର ବୋଲି (୮) ଗୀତାଭିଧାନ (୯) କଳା କଉତୁକ (୧୦) ରସପଞ୍ଚକ (୧୧) ସଙ୍ଗୀତ ଉପେନ୍ଦ୍ର ଭଞ୍ଜ (୧୨) ଦଶପୋଇ (୧୩) କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ (୧୪) ରସିକ ହାରାବଳୀ (୧୫) ରମ୍ୟଲେଖା (୧୬) ସୁବର୍ଣ୍ଣରେଖା (୧୭) ଲାବଣ୍ୟବତୀ (୧୮) ଚୌପଦୀହାର (୧୯) କେଳିବାହୁଡ଼ା ଚଉତିଶା (୨୦) ଅବନା ରସ ତରଙ୍ଗ (୨୧) ତ୍ରୈଲୋକ୍ୟ ମୋହିନୀ (୨୨) ସୁଭଦ୍ରା ପରିଣୟ (୨୩) କଟପାପୁ (୨୪) ହାସ୍ୟାର୍ଣ୍ଣବ (୨୫) ମୁକ୍ତାବତୀ (୨୬) ବ୍ରଜଲୀଳା (୨୭) ଚନ୍ଦ୍ରକଳା (୨୮ ସଙ୍ଗୀତ କୌମୁଦୀ (୨୯) ଶୋଭାବତୀ (୩୦) କଳାବତୀ (୩୧) ରାମଲୀଳାମୃତ (୩୨) ରସମଞ୍ଜରୀ (୩୩) ବାରମାସୀ

(୩୪) ଉଚ୍ଛାବତୀ (୩୫) ଦୁର୍ଗାସ୍ତୁତି (୩୬) ଶ୍ରୀକୃଷ୍ଣ ବିହାର (୩୭) ଲତା (୩୮) ଗଜନିସ୍ତାରଣ (୩୯) କୁଞ୍ଜବିହାର (୪୦) ଗରୁଡ଼ଗୀତା (୪୧) ଛାନ୍ଦଭୂଷଣ (୪୨) କଳାକଣ୍ଟକ (୪୩) ହେମମଞ୍ଜରୀ (୪୪) ଚିତ୍ରରେଖା (୪୫) ପ୍ରେମକଲ୍ପତା (୪୬, ମନୋରମା (୪୭) ବଢ଼ଋତୁ (୪୮) ରାଧାସଲ୍ଲୀଳା (୪୯) କାମକଳା (୫୦) ପୁରୁଷୋତ୍ତମ ମାହାତ୍ମ୍ୟ (୫୧) ଶଶିରେଖା (୫୨) ଶ୍ରାବବତୀ (୫୩) ଚନ୍ଦ୍ରରେଖା (୫୪) ଛତିଶରାଗ (୫୫) ଘଞ୍ଜଶାପୁଜ (୫୬) ଛଟପୋଇ (୫୭) ନଅଟପୋଇ (୫୮) ବାରଟପୋଇ (୫୯) ବିଚିତ୍ର ତରଙ୍ଗିଣୀ (୬୦) ରଘୁନାଥ ବିଳାସ (୬୧) ମଦନମଞ୍ଜରୀ (୬୨) ତ୍ରିପୁର ସୁନ୍ଦରୀ (୬୩) ଅନଙ୍ଗ ରେଖା (୬୪) ଇଚ୍ଛାବତୀ (୬୫) ଚୌପଦୀ ଭୂଷଣ (୬୬) କଳ୍ପିତ କଳ୍ପରେଖା (୬୭) ରସନିଧି ।



# ରୀତିକାଳୀ ତାଲିକା

ଉପେନ୍ଦ୍ର ଭଞ୍ଜଙ୍କୁ ବୁଝିବାକୁ ଗଲେ ତାଙ୍କର ପୂର୍ବବର୍ତ୍ତୀ, ସମସାମୟିକ ଓ ପରବର୍ତ୍ତୀ କେତେକ ଶକ୍ତିଯୁଗୀୟ କାବ୍ୟ-କର୍ତ୍ତାମାନଙ୍କର ନାମ ତାଲିକା ଓ ସେମାନଙ୍କ କୃତି ସମ୍ପର୍କରେ ସୂଚନା ଦେବା ଉଚିତ ହେବ ।

※ ଉପେନ୍ଦ୍ର ଭଞ୍ଜଙ୍କ ସମ୍ପୂର୍ଣ୍ଣ ପୂର୍ବବର୍ତ୍ତୀ କବି ଓ ସେମାନଙ୍କ ଗ୍ରନ୍ଥ ସମୂହ—

(୧) ଅର୍ଜ୍ଜୁନ ଦାସ—ରାମବିଭା, କଳ୍ପଲତା
(୨) ଶିଶୁଶଙ୍କର ଦାସ—ଉଷାଭିଳାଷ
(୩) କାର୍ତ୍ତିକ ଦାସ—ରୁକ୍ମିଣୀ ବିଭା
(୪) ପ୍ରତାପ ରାୟ—କାଞ୍ଚୀକାବେରୀ, ଶଶିରେଖା
(୫) ନରସିଂହ ସେଣ—ପରିମଳା
(୬) ଦେବଦୁର୍ଲ୍ଲଭ ଦାସ—ରହସ୍ୟ ମଞ୍ଜରୀ
(୭) ହରିହର ନରେନ୍ଦ୍ର—ମଦାଳସା
(୮) ପାର୍ଥ ଶ୍ରୀଚନ୍ଦନ—କଳାବତୀ
(୯) ରାମଚନ୍ଦ୍ର ପଟ୍ଟନାୟକ—ହାରାବଳୀ
(୧୦) ବିଷ୍ଣୁ ଦାସ—ପ୍ରେମଲୋଚନା
(୧୧) ରଘୁନାଥ ହରିଚନ୍ଦନ—ଲୀଳାବତୀ, ଶକୁନ୍ତଳା
(୧୨) ଧରଣୀଧର ଦାସ – ରସବାରିଧି

※ ଉପେନ୍ଦ୍ର ଭଞ୍ଜଙ୍କ ବୟୋଜ୍ୟେଷ୍ଠ ସମସାମୟିକ କବି ଓ ସେମାନଙ୍କ କୃତି—

(୧) ଦୀନକୃଷ୍ଣ ଦାସ—ରସକଲ୍ଲୋଳ

(୨) ଧନଞ୍ଜୟ ଭଞ୍ଜ—ଅନଙ୍ଗରେଖା, ଇଚ୍ଛାବତୀ, ରଘୁନାଥ ବିଳାସ, ମଦନମଞ୍ଜରୀ

(୩) ଲୋକନାଥ ବିଦ୍ୟାଧର—ଚିତ୍ରକଳା, ନୀଳାଦ୍ରି ମହୋଦୟ, ସର୍ବାଙ୍ଗସୁନ୍ଦରୀ, ପଦ୍ମାବତୀ ପରିଣୟ, ରସଲୀଳା

(୪) କବି ଲକ୍ଷ୍ମଣ—ଊର୍ମିଳାଗ୍ରନ୍ଥ

(୫) ବିକ୍ରମ ଭଞ୍ଜ—କନକଲତା

(୬) ଘନ ଭଞ୍ଜ—ରସନିଧି, ତ୍ରୈଲୋକ୍ୟମୋହିନୀ

* କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ **ପରବର୍ତ୍ତୀ** କାବ୍ୟକାର ଓ ସେମାନଙ୍କ ସୃଷ୍ଟି—

(୧) ଅଭିମନ୍ୟୁ ସାମନ୍ତସିଂହାର—ବିଦଗ୍ଧ ଚିନ୍ତାମଣି, ପ୍ରୀତି ଚିନ୍ତାମଣି, ପ୍ରେମକଳା

(୨) ଯଦୁମଣି ମହାପାତ୍ର—ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, ରାଘବ ବିଳାସ

(୩) କବି ରାମଚନ୍ଦ୍ର ପଟ୍ଟନାୟକ—ହାରାବତୀ

(୪) ବ୍ରଜନାଥ ବଡ଼ଜେନା—ଅମ୍ବିକା ବିଳାସ, କେଳି-କଳାନିଧି, ବିଚକ୍ଷଣା, ସମର ତରଙ୍ଗ

(୫) କବିସୂର୍ଯ୍ୟ ବଳଦେବ ରଥ—ଚନ୍ଦ୍ରକଳା, କିଶୋର ଚନ୍ଦ୍ରାନନ ଚମ୍ପୂ

(୬) ଗୌରହରି ପରିଚ୍ଛା—ରାଧାମାଧବ ବିଳାସ ।

ରାମବିଭା କାବ୍ୟର କବି ଅର୍ଜ୍ଜୁନ ଦାସଙ୍କଠାରୁ ରୀତିଯୁଗର ବାରିଧାର ପ୍ରସ୍ରବିତ ହୋଇ, ଧୀର ମନ୍ଥର ଗତିରେ ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କ ନିକଟରେ ପହଞ୍ଚିଥିଲା ।

କିନ୍ତୁ ଉପେନ୍ଦ୍ର ଭଞ୍ଜ ହିଁ ହେଲେ ରୀତିଯୁଗର ସର୍ବଶ୍ରେଷ୍ଠ କବି ।



# ଉପେନ୍ଦ୍ରଙ୍କ କାବ୍ୟ ଲକ୍ଷଣ

ଓଡ଼ିଆ ରୀତି ସାହିତ୍ୟର ଉନ୍ମେଷଠାରୁ ପରିସମାପ୍ତି ପର୍ଯ୍ୟନ୍ତ କାବ୍ୟମାନଙ୍କର ଅନୁଶୀଳନ କଲେ ଜଣାଯାଏ ଯେ, ଉଣା ଅଧିକେ ସମସ୍ତ କାବ୍ୟର ଲକ୍ଷଣ ପ୍ରାୟ ଏକ ଏବଂ ଅଭିନ୍ନ । ତାର ବିସ୍ତୃତ ଆଲୋଚନା ନିମ୍ନରେ ପ୍ରଦତ୍ତ ହେଲା ।

**ବିଷୟ ବସ୍ତୁ :**

ଆଲୋଚ୍ୟ ରୀତିଯୁଗୀୟ ସାହିତ୍ୟର ବିଷୟବସ୍ତୁ ପ୍ରତି ଦୃଷ୍ଟି ଦେଲେ ପ୍ରତିପାଦିତ ହେବ ଯେ, ତାହା ଉଭୟ ପୌରାଣିକ ଓ କାଳ୍ପନିକ କାହାଣୀ ଉପରେ ଆଧାରିତ । ମହାକାବ୍ୟ ରାମାୟଣ, ମହାଭାରତ ଓ ଭାଗବତ ଗ୍ରନ୍ଥମାନଙ୍କରୁ ବିଷୟବସ୍ତୁ ଗ୍ରହଣ କାରିଯାଇ କବିମାନେ ସେମାନଙ୍କ କାବ୍ୟ ରଚନା କରିବା ନିମନ୍ତେ ଆଗ୍ରହ ପ୍ରକାଶ କରିଥିବା ଦେଖାଯାଏ ।

ପୁଣି ରାଜକୁମାର : ରାଜକୁମାରୀମାନଙ୍କୁ ନାୟକ ନାୟିକା ରୂପେ ଗ୍ରହଣ କରି ସେମାନଙ୍କ ପ୍ରେମ ବର୍ଣ୍ଣନା କରିବା ନିମନ୍ତେ ଅନେକ କାଳ୍ପନିକ କାବ୍ୟ ସୃଷ୍ଟି କରାଯାଇଥିଲା ।

ଆଲୋଚ୍ୟ ଯୁଗର କାଳ୍ପନିକ କାବ୍ୟମାନେ କେବଳ ଗୋଟିଏ ଧରଣର ବିଷୟବସ୍ତୁ ପରିବେଷଣ କରିଛନ୍ତି ।

ପୂର୍ବ ରାଗରେ ନାୟକନାୟିକାର ଦର୍ଶନ ପ୍ରାୟତଃ **ଚିତ୍ରପଟ** ସାହାଯ୍ୟରେ ସଂଘଟିତ ହୋଇଛି । ଦର୍ଶନ ପରେ ବିରହ, ବିରହ

ପରେ ତୀର୍ଥକ୍ଷେତ୍ର କିମ୍ବା ମନ୍ଦିର ପାର୍ଶ୍ୱରେ ସାକ୍ଷାତ, ଏହାପରେ ବିଚ୍ଛେଦ ଓ କିଛି କାଳ ପରେ ବିବାହ ଉତ୍ସବର ଆୟୋଜନ ତଥା ଆନନ୍ଦ ଉପଲବ୍ଧି ବର୍ଣ୍ଣନା କରାଯାଇଥାଏ । ମିଳନ ପରେ ନାୟକଙ୍କୁ ବିଦେଶ ଗମନ କରିବାକୁ ପଡ଼େ ଓ ନାୟକନାୟିକା ବିଚ୍ଛେଦଜନିତ ବିରହ ଦଶା ଭୋଗ କରିଥାନ୍ତି । ଏହାପରେ କୌଣସି ବ୍ରହ୍ମଋଷି, କିମ୍ବା ଦୈବୀ ଯୋଗେ ପତିପତ୍ନୀ ମିଳିତ ହୁଅନ୍ତି ।

ଏହାହିଁ ପ୍ରାୟ ସମସ୍ତ ରୀତିଯୁଗୀୟ କାବ୍ୟମାନଙ୍କର ବିଷୟବସ୍ତୁ ।

**ରସ ସମାବେଶ—**

ସଂସ୍କୃତ ଅଳଙ୍କାରଶାସ୍ତ୍ର ଅନୁଯାୟୀ କାବ୍ୟରେ ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର, ଶାନ୍ତ, ବାତ୍ସଲ୍ୟ ପ୍ରଭୃତି ସେମାନଙ୍କର ଯଥାବିଧି ପ୍ରୟୋଗ ଥାଏ ।

ରୀତିଯୁଗର ଅନ୍ୟାନ୍ୟ କବି ତଥା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାବଳୀରେ ବିଭିନ୍ନ ରସର ସାର୍ଥକ ପରିବେଷଣ ହୋଇଥିବା ଦେଖାଯାଏ ।

**ସାଙ୍ଗୀତିକତା—**

ରୀତିକାବ୍ୟମାନଙ୍କର ସାଙ୍ଗୀତିକତା ଏକ ବିଶେଷ ଲକ୍ଷଣ । ଓଡ଼ିଆ ରୀତିକାବ୍ୟମାନଙ୍କରେ ବିଭିନ୍ନ ଛାନ୍ଦ ଓ ଛାନ୍ଦ ରାଗ ; ରାଗିଣୀ, ତାଳ ଓ ବାଣୀର ନିର୍ଦ୍ଦେଶ ଥିବା ଦେଖାଯାଏ । ଭଞ୍ଜକବିଙ୍କ କାବ୍ୟାବଳୀରେ ଏହା ଏକ ବିଶେଷ ଆକର୍ଷଣ ଭାବରେ ଗୃହୀତ ହୋଇଥିବା ଦେଖାଯାଏ ।

## ଶୃଙ୍ଗାରିକତା—

ସମଗ୍ର ଶାନ୍ତ ସାହିତ୍ୟରେ 'ଶୃଙ୍ଗାର ରସ' ହିଁ କାବ୍ୟର ପ୍ରାଣ ବିନ୍ଦୁରୂପେ ଗ୍ରହଣ କରାଯାଇଛି ।

ଭୋଜରାଜ କହନ୍ତି; "ଶୃଙ୍ଗାରମେଭ୍ ବଦଃ କାନ୍ତଂ ରସୋମସ୍ୟଂ ଜଗତ୍ ।" ଏଣୁ ଲୌକିକ ହେଉ କି ଅଲୌକିକ ହେଉ, ପ୍ରାକୃତ ହେଉ କି ଅପ୍ରାକୃତ ହେଉ କାବ୍ୟ-ପ୍ରଣେତାମାନେ ପ୍ରେମ ବର୍ଣ୍ଣନାକୁ ମୁଖ୍ୟ ସ୍ଥାନ ଦେଇଛନ୍ତି ।

କବି ସମ୍ରାଟଙ୍କ କାବ୍ୟାବଳୀରେ ରସଶ୍ରେଷ୍ଠ ଶୃଙ୍ଗାର-ରସ ହିଁ ମୁଖ୍ୟସ୍ଥାନ ଲାଭ କରିଛି ।

## ଧାର୍ମିକତା—

କାବ୍ୟ ଅଧ୍ୟୟନ ଫଳରେ ଧର୍ମ-ଅର୍ଥ-କାମ-ମୋକ୍ଷ ଏହି ଚତୁର୍ବର୍ଗ ଫଳ ଲାଭ ହେବା କଥା ପଣ୍ଡିତମାନେ ପ୍ରକାଶ କରିଛନ୍ତି । ଏଣୁ କାବ୍ୟ ମଧ୍ୟରେ ଭଗବତ୍ ସ୍ମରଣ ନିମନ୍ତେ ଯଥେଷ୍ଟ ଉପାଦାନ ରହିଥାଏ ।

ପୌରାଣିକ ଓ କାଳ୍ପନିକ ଉଭୟ ପ୍ରକାର କାବ୍ୟରେ ପ୍ରେମର ବିମଳ ବାରିଧାରା ପ୍ରବାହିତ । କାମ ବା ପ୍ରେମ ଚତୁର୍ବର୍ଗ ଫଳମାନଙ୍କ ମଧ୍ୟରୁ ଅନ୍ୟତମ ।

ପୁଣି ଇଷ୍ଟ ଦେବଦେବୀଙ୍କ ସ୍ତୁତି ଓ ଗୁଣ କୀର୍ତ୍ତନ ପାଠକ ପାଠିକାମାନଙ୍କ ମନରେ ଧର୍ମଭାବ ଜାଗ୍ରତ କରିଥାଏ । ଉପେନ୍ଦ୍ରଙ୍କ ପ୍ରତ୍ୟେକ କାବ୍ୟରେ ଧାର୍ମିକତାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

## ଅଳଂକାର୍ଷ୍ଣ—

କାବ୍ୟ-ନାୟିକାର କଳେବର ମଣ୍ଡନ ନିମନ୍ତେ ବିଭିନ୍ନ ଉପମା ଓ ଅଳଙ୍କାର; ଯଥା—ଉପମା, ରୂପକ, ଶ୍ଳେଷ, ଯମକ, ଅନୁପ୍ରାସ, ଲୋମ, ବିଲୋମ, ବିରୋଧାଭାସ ପ୍ରଭୃତିର ଆଶ୍ରୟ ଗ୍ରହଣ ରୀତିଯୁଗୀୟ କବିମାନଙ୍କର ପ୍ରଧାନ ଅଭିଳାଷ ଥିବା ଜଣାଯାଏ । ଭଞ୍ଜ କାବ୍ୟାବଳୀରେ ଏହାର ପ୍ରଭୂତ ଉଦାହରଣ ରହିଛି ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ରୀତିଯୁଗୀୟ ସମସ୍ତ ରୀତି ଲକ୍ଷଣଗୁଡ଼ିକ ସ୍ୱୀୟ କାବ୍ୟାବଳୀରେ ପରିବେଷଣ କରି ପ୍ରମାଣିତ କଲେ ଯେ, ପ୍ରାକୃତ-ସାହିତ୍ୟରେ ସଂସ୍କୃତ ସାହିତ୍ୟ ସମକକ୍ଷ କାବ୍ୟ ରଚନା ଅସମ୍ଭବ ନୁହେଁ । ଫଳତଃ ସଂସ୍କୃତାଭିମାନୀ ପଣ୍ଡିତମାନଙ୍କର ଗର୍ବ ଚୂର୍ଣ୍ଣ ହେଲା ।



# ଲାବଣ୍ୟବତୀ

ପ୍ରାଚୀନ କାବ୍ୟମାନଙ୍କରେ କବିମାନେ ସ୍ୱସ୍ୱ କାବ୍ୟର ସ୍ୱରୂପ ଓ ସ୍ୱପରିଚିତି ପ୍ରଦାନ କରିଥିବା ଦେଖାଯାଏ । ସେହି କାବ୍ୟ ପରଂପରାକୁ ଲକ୍ଷ୍ୟ କରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜର କାଳଜୟୀ କାବ୍ୟ 'ଲାବଣ୍ୟବତୀ'ରେ ନିଜ କାବ୍ୟର ଆଙ୍ଗିକ ଓ ଆତ୍ମିକ ମୂଲ୍ୟ ନିର୍ଦ୍ଧାରଣ ସମ୍ପର୍କରେ କେତେକ ମନ୍ତବ୍ୟ ପ୍ରଦାନ କରି ଅଛନ୍ତି । ସେ ଲେଖିଛନ୍ତି—

"ସେ ପ୍ରଭୁ କଞ୍ଜ ଚରଣେ କରି ଚିତପରି ।
ଭଞ୍ଜ ବୀରବର କବି ମାନସ ଭ୍ରମର ହେ ॥
ମୂର୍ତ୍ତିବନ୍ତ କରି ମୃଦୁ ଗୀତ ବିସ୍ତରଇ ।
ଏଣୁ କରିଥିବ ଅଳଙ୍କାରଯୁକ୍ତ ହୋଇ ହେ ॥
ପଦ ସରଳ ଧ୍ୱନିରେ ଶ୍ରବଣ ମୋହିବ ।
ଅର୍ଥୀଜନ ପ୍ରକରିକୁ ଆନନ୍ଦ କରିବ ହେ ॥" ଇତ୍ୟାଦି ।

( ଲାବଣ୍ୟବତୀ—୧ମ ଛାନ୍ଦ )

ପୁଣି ନିଜ ସମ୍ପର୍କରେ ଲେଖିଛନ୍ତି—

"ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ ବିରଞ୍ଚି କୋଷରୁ ସମ୍ଭବି ।
ମନୁଷ୍ୟ ଏହି ଅଦଭୁତ ଭଞ୍ଜାନୁଭଞ୍ଜ ନାମ ସତ ॥
ବଶିଷ୍ଟ ବଶିଷ୍ଟ ପଳକା ଶ୍ରୀରାମେ ଦତ୍ତ ରାଜଟୀକା ।
ସେ କୁଳେ ରାଜା ଧନଞ୍ଜୟ ସମସ୍ତ ଗୁଣର ନିଳୟ ॥

ଘୁମୁସର ଅଧିକ ପଟଣେ ନୋଟେକ ବିଖ୍ୟାତ ଜନଗୁଣେ ।
ତଦ୍‌ବତ ତାହାଙ୍କ ଅନୁଜ ନୀଳରଶ ମାଳନ୍ଧ ଭଞ୍ଜ ॥
ତାହାଙ୍କ ଜ୍ୟେଷ୍ଠ ସୁତ ମୂର୍ଦ୍ଧି ଉପେନ୍ଦ୍ର ଭଞ୍ଜ ନାମ ବହି ।
ତାରକ ମନ୍ତ୍ର ପ୍ରସାଦେ ମୋହର କବି ପଣ ଉଦେ ॥

( ଲାବଣ୍ୟବତୀ--ଷୋଡ଼ଶ ଛାନ୍ଦ ) ଇତ୍ୟାଦି ।

ନାୟିକାର ନାମ ଅନୁସାରେ କାବ୍ୟର ନାମ ଲାବଣ୍ୟବତୀ । ଏଥିରେ ମୋଟ ୫୮ଟି ଛାନ୍ଦ ରହିଛି । ଏଥିରେ ନଅଗୋଟି ଛାନ୍ଦରେ ସମ୍ଭୋଗ ଶୃଙ୍ଗାର ବର୍ଣ୍ଣନା ରହିଛି ଓ ଚଉଦଟି ଛାନ୍ଦରେ ବିଚ୍ଛେଦ ବର୍ଣ୍ଣନା ଦିଆଯାଇଛି । ଏହା କବିଙ୍କର ଶ୍ରେଷ୍ଠ ଧ୍ୱନି-ଆତ୍ମକ କାବ୍ୟ ରୂପେ ବିଖ୍ୟାତ ।

କିନ୍ତୁ ସମ୍ପୂର୍ଣ୍ଣ ଭାବରେ ବିଚାର କଲେ ଦେଖାଯିବ ଯେ, ଏ କାବ୍ୟ କେବଳ ଧ୍ୱନିପୂର୍ଣ୍ଣ ନୁହେ । ଏଥିରେ ରୀତି, ରସ, ବକ୍ରୋକ୍ତି ପ୍ରଭୃତିର ସୁମଧୁର ସମନ୍ୱୟ ଘଟିଛି । ଫଳରେ ଏହା ଭଞ୍ଜୀୟ କାବ୍ୟକ ପ୍ରତିଭାର ଏକ ମହୋଜ୍ଜ୍ୱଳ ନିଦର୍ଶନ ବୋଲି ଗୃହୀତ ହୋଇଥାଏ ।

କବି ଉପେନ୍ଦ୍ର ଭଞ୍ଜ ସଂସ୍କୃତ ରୀତିରେ ଲାବଣ୍ୟବତୀ ରଚନା କରି ଅଛନ୍ତି ।

ସେ ପାରଂପରିକ ଭାବରେ ଲାବଣ୍ୟବତୀ କାବ୍ୟରେ ପ୍ରଥମ ଛାନ୍ଦରେ ମଙ୍ଗଳାଚରଣ ପରେ ନାୟକନାୟିକାଙ୍କର ପୂର୍ବ ଜନ୍ମ ବୃତ୍ତାନ୍ତର ଅବତାରଣା କରି ଅଛନ୍ତି । ଅପକର୍ମର ପ୍ରାୟଶ୍ଚିତ୍ତ ରୂପେ ସ୍ୱର୍ଗବାସୀ ପତିପତ୍ନୀ ଧରାବାସୀ ହେଲେ ।

ଘଟଣାଟି ହେଲା, ଶିବେ ଏକାକୀ ବସିଥିଲେ ସେତେବେଳେ ଅବସର ନିମନ୍ତେ ଜଗତ୍‌ମାତା ପାର୍ବତୀ ନିଜ ମନରୁ ଏକ ସୁନ୍ଦରୀ କନ୍ୟା ଜାତ କଲେ । ପାର୍ବତୀଙ୍କ ମନରୁ ତାଙ୍କର ଇଚ୍ଛାରେ ଏହି କନ୍ୟା ଜାତ ହେବା ହେତୁ ଏହାର ନାମ ହେଲା 'ବାଞ୍ଛାବତୀ' । ବାଞ୍ଛାବତୀ ସଙ୍ଗରେ କିଛି ସମୟ ହସାଖେଳ କରିବା ପରେ ହଠାତ୍ ଦୂରରୁ ଶିବଙ୍କର ଡମ୍ବରୁ ଶବ୍ଦ ଶୁଣାଗଲା ।

ପାର୍ବତୀ ମନେକଲେ, ସୁନ୍ଦରୀ ବାଞ୍ଛାବତୀର ଅପରୂପ ସୌନ୍ଦର୍ଯ୍ୟରେ ଶିବ ଆକୃଷ୍ଟ ହୋଇ ପାରନ୍ତି ଓ ଏପରି ଅବସ୍ଥା ସୃଷ୍ଟି ହେଲେ 'ବାଞ୍ଛାବତୀ' ହୁଏତ ସପତ୍ନୀ ହେବ, ଏହା ଭାବି ଭୟ ପାଇ, ପାର୍ବତୀ ଉକ୍ତ କନ୍ୟାକୁ ଏକ ଅଗମ୍ୟ କାନନକୁ ପ୍ରେରଣ କଲେ । ଆଦେଶ ଦେଲେ, ତାକୁ ଯଦି କୌଣସି ପୁରୁଷ ସ୍ପର୍ଶ କରନ୍ତି, ସହସା ତାର ମୃତ୍ୟୁ ହେବ । ଅନ୍ୟ ଜନ୍ମରେ ହୁଏତ ସେ ପୁରୁଷ ସଙ୍ଗ ଲାଭ କରିବ ।

ପ୍ରଭାକର ନାମକ ଏକ ରାଜକୁମାର ଏହି ସମୟରେ ରାଜ୍ୟ ନାରୀ ପ୍ରାପ୍ତି ପାଇଁ କେଦାରେଶ୍ୱର ଦର୍ଶନ ନିମନ୍ତେ ଯାତ୍ରା କରୁଥିଲେ । ବାଟରେ ଏକ ସୁରମ୍ୟ ପ୍ରାସାଦରେ ସୁନ୍ଦରୀ ନାରୀ ବାଞ୍ଛାବତୀକୁ ଦେଖି ତା' ପ୍ରତି ଆକୃଷ୍ଟ ହେଲେ ଓ ତାକୁ ଲାଭ କରିବା ନିମନ୍ତେ ବ୍ୟାକୁଳତା ପ୍ରକାଶକଲେ । ସେ ବାଞ୍ଛାବତୀର ସମ୍ମତି ହାସଲ କରି ତାର ଅଙ୍ଗ ସ୍ପର୍ଶ କରିବା ମାତ୍ରେ, ସୁନ୍ଦରୀ ବାଞ୍ଛାବତୀର ପ୍ରାଣବାୟୁ ଉଡ଼ି ଚାଲିଗଲା ।

ପ୍ରଭାକର ଏହା ଦେଖି ଅତ୍ୟନ୍ତ ବ୍ୟଥିତ ହେଲେ । ଏହି ସମୟରେ ଶୂନ୍ୟବାଣୀ ଶୁଣି ପ୍ରଭାକର ତାର ପ୍ରେମିକା ବାଞ୍ଛାବତୀର ମୃତ ଶରୀର ନେଇ ଗଙ୍ଗା ସାଗରରେ ଆତ୍ମବିସର୍ଜନ କଲେ ।

ପର ଜନ୍ମରେ ପ୍ରେମିକ ପ୍ରଭାକର କର୍ଣ୍ଣାଟ ଦେଶର ରାଜକୁମାର ରୂପେ ଓ ସୁନ୍ଦରୀ ବାଞ୍ଛାବତୀ ସିଂହଳର ରାଜକନ୍ୟା ରୂପେ ଜନ୍ମଗ୍ରହଣ କଲେ ।

କର୍ଣ୍ଣାଟ ଦେଶର ଯୁବରାଜଙ୍କ ନାମ ହେଲା 'ଚନ୍ଦ୍ରଭାନୁ' ଓ ସିଂହଳ ରାଜଜେମାଙ୍କ ନାମ ହେଲା 'ଲାବଣ୍ୟବତୀ' ।

କାବ୍ୟର ପ୍ରଥମ କେତୋଟି ଛାନ୍ଦରେ ନାୟକ ଓ ନାୟିକାର ବାଲ୍ୟ, କୈଶୋର ଓ ଯୌବନର କ୍ରମାଭିବୃଦ୍ଧି ସ୍ୱାଭାବିକ ଭାବରେ ପରିବେଷଣ କରାଯାଇଛି ।

ଯୌବନପ୍ରାପ୍ତା ଲାବଣ୍ୟବତୀ ନିମନ୍ତେ ବିବାହ ପ୍ରସଙ୍ଗ ପଡ଼ିଲା । ଜଣେ ସନ୍ନ୍ୟାସୀ ସେହି ସୁନ୍ଦରୀ ରାଜଜେମାର ଚିତ୍ରପଟ ସଙ୍ଗରେ ନେଇ ବିଭିନ୍ନ ଦେଶର ରାଜସଭାରେ ପହଞ୍ଚିଲେ ଓ ଅବଶେଷରେ କର୍ଣ୍ଣାଟ ଦେଶରେ ଉପସ୍ଥିତ ହେଲେ । ସେଠାରେ ରାଜକୁମାର ଚନ୍ଦ୍ରଭାନୁଙ୍କୁ ସୁନ୍ଦରୀ ଲାବଣ୍ୟବତୀର ଚିତ୍ରପଟ ଦେଖି ଯୁବରାଜ ଚନ୍ଦ୍ରଭାନୁ ଲାବଣ୍ୟବତୀ ପ୍ରତି ପ୍ରଣୟାସକ୍ତ ହେଲେ ।

ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ ପରସ୍ପରକୁ ସ୍ୱପ୍ନରେ ଦେଖି ପ୍ରଣୟ ସଙ୍କେତ ବିନିମୟ କଲେ ଓ ପରସ୍ପରକୁ ପାଇବା ପାଇଁ ଝୁରି ହେଲେ । ସନ୍ନ୍ୟାସୀଙ୍କ ସହାୟତାରେ ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ପତ୍ର ବିନିମୟ ମଧ୍ୟ ହେଲା ।

ଚନ୍ଦ୍ରଭାନୁ ନାୟିକା ଲାବଣ୍ୟବତୀ ସଙ୍ଗେ ଭେଟ ହେବା ପାଇଁ ଊର୍ଦ୍ଧ୍ୱଗ୍ରୀବ ହୋଇ ଉଠିଲେ । ରାମେଶ୍ୱର ମନ୍ଦିର ଦର୍ଶନ ବାହାନାରେ ସେ ସସୈନ୍ୟ ରାମେଶ୍ୱର ଗମନ କରି ଲାବଣ୍ୟବତୀ ନିକଟକୁ ତାଙ୍କର ରାମେଶ୍ୱର ଆଗମନ ବାର୍ତ୍ତା ପ୍ରେରଣ କଲେ ।

ଲାବଣ୍ୟବତୀ ସହଚରୀମାନଙ୍କ ଗହଣରେ ଦେବଦର୍ଶନ ନିମନ୍ତେ ସଜବାଜ ହୋଇ ଆସିଲି । ପ୍ରସିଦ୍ଧ ରାମେଶ୍ୱରମ୍ ମନ୍ଦିରରେ ଚନ୍ଦ୍ରଭାନୁ ଓ ଲାବଣ୍ୟବତୀର ଶୁଭଦୃଷ୍ଟି ଭେଟ ହେଲା ।

ପିତାମାତା କୁମାର କୁମାରୀଙ୍କର ପରସ୍ପର ପ୍ରତି ଅନୁରାଗ ଥିବା ଜାଣିପାରି ସେ ଦୁହିଙ୍କୁ ବିବାହ କରିଦେବା ପାଇଁ ଇଚ୍ଛା କଲେ । ତା'ପରେ ଉଭୟ ପକ୍ଷରୁ ବିବାହ ପ୍ରସ୍ତାବ ଗ୍ରହଣ କରାଗଲା ଓ ନାୟକନାୟିକାର ବିବାହ ଉତ୍ସବ ଅନୁଷ୍ଠିତ ହେଲା ।

ଏହାପରେ ନବବିବାହିତ ପ୍ରେମିକ ପ୍ରେମିକା ସେମାନଙ୍କ ଜୀବନର ପ୍ରଥମ ମିଳନର ଉଷ୍ମ ମାଦକମୟ ମୁହୂର୍ତ୍ତମାନଙ୍କୁ ଜୀବନ ଭରି ଉପଭୋଗ କରିବାକୁ ଲାଗିଲେ । ସେମାନେ ମନେକଲେ, ପରସ୍ପରକୁ ପାଇ ଜୀବନ ସେମାନଙ୍କର ସାର୍ଥକ ହେଲା । ହୃଦୟର ସ୍ୱପ୍ନ, କଳ୍ପନା ଓ ଅବଦମିତ କାମନାମାନେ ଧାଡ଼ିବାନ୍ଧି ଶୋଭା ଯାତ୍ରାରେ ବାହାରି, ସ୍ଫଟିକ ଦର୍ପଣରେ ନିଜ ମୂର୍ତ୍ତିମାନଙ୍କୁ ନିଜେ ନିଜେ ଅବଲୋକନ କରି ସନ୍ତୋଷର ନିଶ୍ୱାସ ମାରି ସେମାନେ ଶାନ୍ତ ହେଲେ । ସମଗ୍ର ଧରଣୀ ସୁନ୍ଦର ଦେଖାଗଲା ।

କିନ୍ତୁ ନବଯୁବକ ଯୁବତୀଙ୍କର ଏହି ମିଳନ ମୁଖର ସଙ୍ଗୀତଗୁଡ଼ିକ ଦୀର୍ଘସ୍ଥାୟୀ ହୋଇ ରହିଲା ନାହିଁ । ରାଜକୁମାର ଚନ୍ଦ୍ରଭାନୁ, ରାଜ୍ୟରେ ଦେଖାଦେଇଥିବା ତସ୍କର ତାଡ଼ନାକୁ ଆୟତ୍ତାଧୀନ କରିବା ନିମନ୍ତେ ନବପରିଣୀତା ପ୍ରଣୟିନୀ ନିକଟରୁ ସୁଦୀର୍ଘ ଏକ ବର୍ଷ କାଳ ଅନୁପସ୍ଥିତ ରହିଲେ ।

ପ୍ରଣୟର ଜ୍ୱାଳା ପ୍ରଶମିତ ହେବା ପୂର୍ବରୁ, ସମ୍ଭୋଗ ଅଭିଳାଷ ସମ୍ପୂର୍ଣ୍ଣ ଭାବରେ ଚରିତାର୍ଥ ନ ହେଉଣୁ ପ୍ରେମିକ

ପ୍ରେମିକାଙ୍କ ମନରେ ବିରହ ଜ୍ୱାଳା ଦେଖାଦେଲା । ଏହିଦ୍ୱାରା ନବ ପ୍ରଣୟ ତୀବ୍ରତର ହେଲା । ଭିନ୍ନ ଭିନ୍ନ ଋତୁମାନଙ୍କରେ ବିରହିତ ପ୍ରଣୟୀ ଓ ପ୍ରଣୟିନୀ ଋତୁ-ଅନୁସାରୀ କାମ-ବିଳାସ-କଳ୍ପନାରେ ଘାରି ହେଲେ ଓ ସେ ସମସ୍ତର ଦୁର୍ଲ୍ଲଭତା ଜନିତ ହା ହୁତାଶ ଭାବରେ ଦଗ୍ଧ ହେବାକୁ ଲାଗିଲେ; କିନ୍ତୁ ତାହା ହିଁ ଥିଲା ବିଧି ନିର୍ଦ୍ଦେଶ ।

ଶେଷରେ ଦୁଇ ବିଚ୍ଛିନ୍ନ ମନ, ଦେହ ଓ ଆତ୍ମାର ପୁନର୍ମିଳନ ସଂଘଟିତ ହେଲା ।

ଯଥା ସମୟରେ ନାୟକ ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ କର୍ଣ୍ଣାଟ ଦେଶର ରାଜା ଓ ରାଣୀ ଭାବରେ ଅଭିଷିକ୍ତ ହେଲେ ଓ ପରମ ସୁଖରେ କାଳଯାପନ କଲେ ।



# କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସମ୍ପର୍କରେ ସ୍ୱୟଂ କବି ଭଞ୍ଜ ଯାହା ଉଲ୍ଲେଖ କରିଅଛନ୍ତି, ତାହା ପ୍ରତ୍ୟେକ ପାଠକଙ୍କ ପକ୍ଷରେ ପ୍ରଣିଧାନଯୋଗ୍ୟ । ସେ ତାଙ୍କ କାବ୍ୟ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ପ୍ରଥମ ଛାନ୍ଦରେ ଲେଖିଛନ୍ତି—

"ରଚିବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" ଚରିତ ।
ସୁକାନ୍ତ ସୁମନା ପରି ହୋଇବ ଏ ଗୀତ ହେ ॥
ସୁରଭିରେ ମୋହିତ-ମାନସ ହେବ ଭବ୍ୟ ।
ଗୁଣବନ୍ତେ ହୃଦେ ମାଳା କରିଣ ଧରିବେ ହେ ॥
ରସିକ ଭ୍ରମରେ ହେବେ ରସ ସେବନ ବଶ ।
ନିର୍ଗୁଣେ ଦେଖିଲେ ନ ଦେଖିଲେ ଅଛି କିସ ହେ ।
କବି ଉପଇନ୍ଦ୍ର ତବ କୃପାରେ ହୋଇଛି ।
ଏତେ ମନୋରଥ ସାଧେ କି ସଂଶୟ ଅଛି ହେ ॥"

ପୁଣି ଏ କାବ୍ୟରେ ନିମ୍ନଲିଖିତ ମତେ ଉଲ୍ଲେଖ ଥିବା ଦେଖିବାକୁ ମିଳେ ।

"ସ୍ପର୍ଦ୍ଧି କରି ଯେ କାବ୍ୟ ଅର୍ଥ ସ୍ୱେ ଯୋଡ଼ି ।
ଅଛନ୍ଦ, ହାସେ ଆଦ୍ୟ ରସରେ ଜଡ଼ ଯେ ॥
କହେ ଉପଇନ୍ଦ୍ର, ବର୍ଣ୍ଣି ଭଙ୍ଗୀରୁ ବାରି ।
ଛନ୍ଦ ଗଙ୍ଗା ଯମୁନା ସଙ୍ଗମ ପରି ଯେ ॥"

( କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—ବିଂଶ ଛାନ୍ଦ )

"ଏତ ପରିକୃତ କାବ୍ୟ ଛନ୍ଦ ପ୍ରାନ୍ତ ସତ
ଦୃଷ୍ଟି ଦୃଷ୍ଟାନ୍ତର ଏଥି ଅଛି ବିଶେଷତ ।
ଯେଣ ନୈଷଧ ପରିଏ ।
ଉପେନ୍ଦ୍ର ଜହ୍ନେ, ବୁଧ ପ୍ରମୋଦ କରିଏ ॥"

( କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—ଏକାଦଶ ଛନ୍ଦ )

ବୈଦିକ ଯୁଗଠାରୁ ଆରମ୍ଭ କରି ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଦୀର୍ଘକାଳ ବ୍ୟାପୀ ସମଗ୍ର ଭାରତବର୍ଷରେ ସଂସ୍କୃତ ସାହିତ୍ୟର ଅଖଣ୍ଡ ପ୍ରବାହ ଅପ୍ରତିହତ ଥିଲା । ପାଠକମାନଙ୍କ ପାଖରେ କେବଳ ଓଡ଼ିଆ ଭାଷା ନୁହେଁ, ଭାରତୀୟ ପ୍ରାନ୍ତୀୟ ଭାଷା ବା ପ୍ରାକୃତ ଭାଷା ନିମ୍ନସ୍ତରୀୟ ପ୍ରତିଭାତ ହେଉଥିଲା । ମାତୃଭାଷା ପ୍ରତି ଜାତୀୟ କବି ଉପେନ୍ଦ୍ର ଭଞ୍ଜଙ୍କ ଏତାଦୃଶ ଅପମାନ ଅସହ୍ୟ ବୋଧ ହୋଇଥିବ । ଏଣୁ ପ୍ରତିବାଦ କରି, ସେ ସଂସ୍କୃତ ସାହିତ୍ୟ ରୀତିର ପୂର୍ଣ୍ଣ ଅନୁସରଣ ପୂର୍ବକ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ରଚନା କରିଥିବା ସମ୍ଭବ । ତେଣୁ ସେ ଏହି କାବ୍ୟକୁ ଅଳଙ୍କାର ମଣ୍ଡନ, କଳ୍ପନା ବିଳାସ, ପଦ ସଂଯୋଜନା, ଶବ୍ଦ ପାଣ୍ଡିତ୍ୟ, ଛନ୍ଦ ପ୍ରୟୋଗ ପ୍ରଭୃତିରେ ସଂସ୍କୃତ ସାହିତ୍ୟର ସମତୁଲ କରି ଲେଖିଥିଲେ ।

ପୁଣି ସଂସ୍କୃତ ସାହିତ୍ୟ ଗଗନର ପ୍ରଚଣ୍ଡ ମାର୍ତ୍ତଣ୍ଡରୂପୀ ପଣ୍ଡିତ କବି ଶ୍ରୀହର୍ଷଙ୍କ କବିତ୍ୱ ଓ ପାଣ୍ଡିତ୍ୟ ବିଳସିତ କାବ୍ୟ 'ନୈଷଧୀୟମ୍ ଚରିତମ୍' ସମତୁଲ ରଚନା, ଓଡ଼ିଆ ଭାଷାରେ ପ୍ରଣୟନ କରିବା ନିମନ୍ତେ ସେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ରଚନା କରିଥିବା ପ୍ରକାଶ କରିଛନ୍ତି ।

ପୁଣି ସେ ସ୍ପଷ୍ଟ ଭାବରେ ଉଲ୍ଲେଖ କରନ୍ତି ଯେ, ଏ କାବ୍ୟ ପଣ୍ଡିତ ତଥା ରସିକ ପାଠକମାନଙ୍କ ପାଇଁ ଅଭିପ୍ରେତ ।

"ନାନା ଶବ୍ଦରେ ଯେ ବିଚକ୍ଷଣ ।
ଯେହୁ ଜାଣେ ଅଳଙ୍କାର ଲକ୍ଷଣ ।
ସେହି କରୁ ଏ ଛାନ୍ଦ ବିବେଚନା ।
ବାଲ୍ୟ ପୌଗଣ୍ଡ ଯୌବନ ରଚନା ॥"

( ତୃତୀୟ ଛାନ୍ଦ )

"ଯେ କବି ଅର୍ଥୀ ପଣ୍ଡିତ ସୁହୃଦ ।
ରସିକ ସେହି ଯୋଜକ ଏ ଛାନ୍ଦ ॥"

( ଦ୍ୱାଦଶ ଛାନ୍ଦ )

"ବୁଧ ସାଉସେ ବେନି ରାଗ ଲୁଚର ।
ମାର ଷୀରୁ ମିଶ୍ରିତ ବିରୁକ୍ତ କାର ଯେ ।"

( ବିଂଶ ଛାନ୍ଦ )

"ଭସିବେ ରସିକ କୋବିଦ ଜନ ଯେ ଏ ଛାନ୍ଦ ଶ୍ରୁତିଭୂଷା ଶୁଣି ।
ପ୍ରଭାତରେ ପ୍ରଭାତରେ ଶବ ମୃଗ ଆଗତ ଶବଦ ଶୁଣି ।"

( ତ୍ରିଂଶ ଛାନ୍ଦ )

ଏ ପ୍ରକାର ଉଦ୍ଧୃତମାନ ପାଠକଲେ ସ୍ପଷ୍ଟ ଜଣାଯାଏ ଯେ, 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ଅଧ୍ୟୟନ ନିମନ୍ତେ ଏକ ସ୍ୱତନ୍ତ୍ର ଧରଣର ପାଠକ ଶ୍ରେଣୀ ଆବଶ୍ୟକ । ଯେଉଁମାନଙ୍କର ଅଭିଧାନ, କାବ୍ୟ, ଅଳଙ୍କାର ଶାସ୍ତ୍ରରେ ପ୍ରବେଶ ଥିବ, ସେହିମାନେ କେବଳ ଏ କାବ୍ୟ ଅଧ୍ୟୟନ କଲେ ବାଞ୍ଛିତ ରସ ଆସ୍ୱାଦନ କରିପାରିବେ ।

ପୁଣି ଅଳ୍ପ ବିଦ୍ୟାବାନ ପାଠକମାନଙ୍କୁ ଇଙ୍ଗିତ କରି ସେ ଲେଖିଛନ୍ତି—

"ବିଜ୍ଞ ସୁଜନେ ରଞ୍ଜନ ପରମାନ ମାନସେ କରିବ ବିଗ୍ରହ ।
'ଅଳ୍ପ ବ୍ୟୁତ୍ପତ୍ତି ଉତ୍ପତ୍ତି ଦରପନ୍ତ ବାନରେ ସୃଷ୍ଟି ପରକାର ।।
ଛୁଡ଼ନ୍ତୁ, ନାହିଁ ଆମ୍ଭେ ବଡ଼ ଏ ଗର୍ବ ।
ଏ ଗୀତ ସବିତା ଉଦ୍ଧ ପ୍ରଭ୍ରବଟରେ ତାମସ ତମସ ନାଶିବ ।।

( ଅଷ୍ଟବିଂଶ ଛନ୍ଦ )

ଖଳ ବାଳକେ ଏ କଥା ପ୍ରସଙ୍ଗ । ତାଙ୍କ ଚିତ୍ତ କାହିଁ ସୁଗୀତେ ସଙ୍ଗ ॥
ଯେ କବି ଅର୍ଥୀ । ପଣ୍ଡିତ ସୁହୃଦ ! ରସିକ ଯେହୁ ସେବିବ ଏ ଛନ୍ଦ ॥
ବ୍ୟସ୍ତ ଅଳଙ୍କାର । ମଣ୍ଡନ ବିଧି ନିର୍ଦୋଷ ବିଗ୍ରହ ।। × ×

( ଦ୍ୱାଦଶ ଛନ୍ଦ )

ସ୍ୱକାବ୍ୟମାନଙ୍କୁ ସଙ୍ଗୀତ ମୁଖର କରିବା ନିମନ୍ତେ ମଧ୍ୟଯୁଗୀୟ ରୀତିକବିମାନେ ସେମାନଙ୍କ ସୃଷ୍ଟିରେ ରାଗରାଗିଣୀ, ତାଳ, ବାଣୀ ଇତ୍ୟାଦିର ପ୍ରୟୋଗ କରୁଥିଲେ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ବିଭିନ୍ନ ଛନ୍ଦରେ ନିମ୍ନଲିଖିତ ରାଗ ରାଗିଣୀର ପ୍ରୟୋଗ ଦେଖିବାକୁ ମିଳେ ।

| ଛନ୍ଦ | ରାଗ | ବାଣୀ |
|---|---|---|
| ୧ମ | ମଙ୍ଗଳାଚରଣ | |
| ୨ୟ | ମାଳବ | ତୋଡ଼ିବାଣୀ |
| ୩ୟ | କେଦାର | ଚକ୍ରକେଳୀ ବାଣୀ |
| ୪ର୍ଥ | ମଙ୍ଗଳ ବରାଡ଼ୀ | ମୁନିବର ବାଣୀ |

| ଗ୍ରନ୍ଥ | ରାଗ | ବାଣୀ |
|---|---|---|
| ୫ମ | ଗୁର୍ଜ୍ଜରୀ | |
| ୬ଷ୍ଠ | ବସନ୍ତ | |
| ୭ମ | ରସକୋଇଲ | |
| ୮ମ | ଦେଶାକ୍ଷ | |
| ୯ମ | | |
| ୧୦ମ | କଉଶିକ | |
| ୧୧ଶ | ଶଙ୍କରାଭରଣ | |
| ୧୨ଶ | ବରାଡ଼ି …… | ଆଷାଢ଼ ଶୁକ୍ଳବାଣୀ |
| ୧୩ଶ | କାମୋଦ | |
| ୧୪ଶ | ଘଣ୍ଟାରବ | |
| ୧୫ଶ | ନଳମ୍ବ ଗୌଡ଼ା | |
| ୧୬ଶ | ଛନ୍ଦା କୌଶିକ | |
| ୧୭ଶ | କାଳୀ | |
| ୧୮ଶ | ରାମକେରୀ | |
| ୧୯ଶ | ମାଳବ | |
| ୨୦ଶ | କଳହଂସ କେଦାର ଓ ଭୂପାଳ | |
| ୨୧ଶ | ମଙ୍ଗଳ | |
| ୨୨ଶ | କନଡ଼ା | |
| ୨୩ଶ | କଲ୍ୟାଣ ଆହାରୀ | |
| ୨୪ଶ | ଛନ୍ଦାଭୈରବ | |
| ୨୫ଶ | ଛନ୍ଦାଦେଶାକ୍ଷ, କାଫିକାମୋଦ, ମାଳବରାଡ଼ି | |

| ଛାନ୍ଦ | ରାଗ | ବାଣୀ |
|---|---|---|
| ୨୬ଶ | କୁମ୍ଭକାମୋଦୀ | |
| ୨୭ଶ | ଘାଡ଼ାଡ଼ିଆ କେଦାର | |
| ୨୮ଶ | ବସନ୍ତବରାଡ଼ି | |
| ୨୯ଶ | ବଚନ ଦେଶାକ୍ଷ | |
| ୩୦ଶ | ସିନ୍ଧୁ କେଶାକ୍ଷ | |
| ୩୧ଶ | ଚକ୍ରାକେବରାଡ଼ି | |
| ୩୨ଶ | କଳସ ଗୌଡ଼ା | |
| ୩୩ଶ | ମଙ୍ଗଳ ଗୁର୍ଜ୍ଜରୀ | |
| ୩୪ଶ | ପଞ୍ଚମ ବରାଡ଼ି | |
| ୩୫ଶ | ଭାଟିଆରୀ | |

କେତେକ ମତବ୍ୟକ୍ତ କରିଥାନ୍ତି ଯେ, 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଏକ ଅସଂପୂର୍ଣ୍ଣ କାବ୍ୟ । ଏଥିର ପ୍ରମାଣ ଦେବାକୁ ଯାଇ ସେମାନେ ନିମ୍ନଲିଖିତ କାରଣ ଉପସ୍ଥାପନ କରିଥାନ୍ତି ।

(କ) ଉପେନ୍ଦ୍ର ଭଞ୍ଜ ତାଙ୍କର ଅନ୍ୟ କାବ୍ୟ ମାନଙ୍କରେ ଶେଷ ଛାନ୍ଦରେ ସ୍ୱୀୟ କାବ୍ୟର ଲକ୍ଷଣ ସହ ପରିସମାପ୍ତି ଘୋଷଣା କରିଥାନ୍ତି; କିନ୍ତୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସେଭଳି ଘୋଷଣା ନାହିଁ ।

(ଖ) ତାଙ୍କର ପୂର୍ବ କାବ୍ୟ ମାନଙ୍କରେ ସେ ସାଧାରଣତଃ ନାୟକ ନାୟିକାଙ୍କର ବିବାହ ଉତ୍ସବ ପରେ, ନାୟକର ସ୍ଥାନାନ୍ତର ଯାତ୍ରା ଯୋଗୁ ବିରହ ଦୁଃଖ ପଡ଼ିଥାଏ । ପରେ ସେମାନଙ୍କର ପୁନର୍ମିଳନରେ କାବ୍ୟର ପରିସମାପ୍ତି ଘଟିଥାଏ; କିନ୍ତୁ ଆଲୋଚ୍ୟ

କାବ୍ୟରେ ତାହା ଘଟି ନାହିଁ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ପୁଷ୍ପକେତୁର କେଳିଗୃହ ବର୍ଣ୍ଣନା ପରେ ଏ କାବ୍ୟର ପରିସମାପ୍ତି ଘଟିଛି ।

କିନ୍ତୁ ଏ ଯୁକ୍ତିମାନଙ୍କୁ ଖଣ୍ଡନ କରିବା ନିମନ୍ତେ କୁହା ଯାଇଥାଏ ଯେ, କେଳିଗୃହର ବର୍ଣ୍ଣନା ପରେ କଥାବସ୍ତୁର ଅଗ୍ରଗତି ନିମନ୍ତେ ହୁଏତ କବି ଜାଣିଶୁଣି ଅନିଚ୍ଛା ପ୍ରକାଶ କରି-ଥାଇ ପାରନ୍ତି ଏବଂ ତାଙ୍କ କାବ୍ୟରେ ଏକ ବ୍ୟତିକ୍ରମ ସୃଷ୍ଟି କରିବା ନିମନ୍ତେ ଶେଷାଂଶରେ ପରିସମାପ୍ତି ସୂଚକ ଘୋଷଣା କରି ଥାଇ ନ ପାରନ୍ତି ।

ସମାଲୋଚକମାନେ କହନ୍ତି, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଭଞ୍ଜ କବିଙ୍କର ସର୍ବଶ୍ରେଷ୍ଠ ରଚନା । ଏଥିରୁ କବିଙ୍କର ପାଣ୍ଡିତ୍ୟ, କଳ୍ପନା ପ୍ରବଣତା, ଅଳଙ୍କାର ଧୁରିଣତା ପ୍ରଭୃତିର ସମ୍ୟକ ପରିଚୟ ମିଳିଥାଏ । ଗୋଟିଏ କଥାରେ କହିବାକୁ ଗଲେ, 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ଭଞ୍ଜ କବିଙ୍କର ବହୁବିଧ ଶାସ୍ତ୍ର ଅଧ୍ୟୟନ ଜନିତ ସୁଗଭୀର ପାଣ୍ଡିତ୍ୟର ପ୍ରଚଣ୍ଡ ସ୍ଫୁରଣ ।

ଏ କାବ୍ୟର କାହାଣୀ ହେଲା, 'ବିଶ୍ୱାନନ୍ଦ' ଚମ୍ପାନଗରୀର ରାଜା ଥିଲେ । ତାଙ୍କ ରାଜ୍ୟରେ ପ୍ରଜାମାନେ ସୁଖ ଶାନ୍ତିରେ ବାସ କରୁଥିଲେ । ସେମାନଙ୍କୁ ଧର୍ମ, ଅର୍ଥ ଓ କାମ ଏହି ତିନି ବର୍ଗର ପ୍ରାପ୍ତି ଘଟିଥିଲା ।

ବିଶ୍ୱାନନ୍ଦଙ୍କ ପାଟରାଣୀଙ୍କ ନାମ 'ବିଚିତ୍ର କଳା' । ସେ ସୁଗୁଣ ସଂପନ୍ନା ନାରୀ ଥିଲେ ଓ ସ୍ୱାମୀଙ୍କର ସୁଖ ଦୁଃଖରେ ଭାଗୀଥିଲେ । ସ୍ୱାମୀ ସ୍ତ୍ରୀ ଉଭୟେ ଆନନ୍ଦରେ କାଳାତିପାତ କରୁଥିଲେ ।

ଏ ସବୁ ସତ୍ତ୍ୱେ, ରାଜା ରାଣୀ ସନ୍ତାନ ସୁଖରୁ ବଞ୍ଚିତ ଥିଲେ । ଏଥିପାଇଁ ସେମାନେ ଦାରୁଣ ଦୁଃଖ ଭୋଗ କରିବାକୁ ଲାଗିଲେ । ଏହା ଦେଖି ମନ୍ତ୍ରୀ 'ବୁଦ୍ଧି ସାଗର' ରାଜାରାଣୀଙ୍କୁ ତୀର୍ଥ ଦର୍ଶନ କରିବାକୁ ପରାମର୍ଶ ଦେଲେ ।

ମନ୍ତ୍ରୀ ବୁଦ୍ଧିସାଗରଙ୍କ ପରାମର୍ଶ କ୍ରମେ ନିଃସନ୍ତାନ ରାଜାରାଣୀ ସନ୍ତାନ ଲାଭ ଉଦ୍ଦେଶ୍ୟରେ ବଦରିକା ତୀର୍ଥ ବା ବଦ୍ରିନାରାୟଣ ଯିବାକୁ ମନସ୍ଥ କଲେ । ତଦନୁଯାୟୀ ତାଙ୍କର ଯାତ୍ରା ପ୍ରସ୍ତୁତ ହେଲା । ଅବଶେଷରେ ରାଜା, ମନ୍ତ୍ରୀ ନିଜ ଦେଶର ସୈନ୍ୟମାନଙ୍କ ସଙ୍ଗରେ ହିମାଳୟ ଅଭିମୁଖେ ଯାତ୍ରାକଲେ । ଚମ୍ପାନଗରୀର ରାଜା ବିଶ୍ୱାନନ୍ଦ ସସୈନ୍ୟ, ଆଡ଼ମ୍ବର ସହକାରେ ତାଙ୍କ ରାଜ୍ୟରେ ପଦାର୍ପଣ କରିଥିବା ଜାଣି ପଥ ମଧ୍ୟରେ ପଡ଼ୁଥିବା ଶ୍ରୀନଗର ଓ ଅନ୍ୟଦେଶବାସୀମାନେ ସେମାନଙ୍କୁ ଭୟ ଓ ଭକ୍ତି ସହକାରେ ସମ୍ମାନ ପ୍ରଦର୍ଶନ କଲେ ।

ରାଜା ପଥ ମଧ୍ୟରେ ଦେଖିଲେ, ଗୋଟିଏ ରାକ୍ଷସ ଗୋଟିଏ ହଂସୀକୁ ବଧ କରିବା ନିମନ୍ତେ ତା'ର ଅନୁଧାବନ କରୁଛି । ହଂସୀର ଏତାଦୃଶ ଅବସ୍ଥା ଦେଖି ତାକୁ ଉକ୍ତ ବିପଦରୁ ରକ୍ଷା କରିବା ନିମନ୍ତେ ରାଜାଙ୍କର ଇଚ୍ଛା ଜାତ ହେଲା । ତେଣୁ ରାକ୍ଷସର ଗତିରୋଧ ପୂର୍ବକ ତାକୁ ବଧକଲେ ଓ ହଂସୀକୁ ତା'ର କବଳରୁ ରକ୍ଷା କଲେ । ପରେ ସେ ଜାଣିବାକୁ ପାଇଲେ ଯେ, ସେହି ହଂସୀ ବ୍ରହ୍ମାଙ୍କ ବାହନ ଥିଲା ।

ଏହାପରେ ହଂସୀ ବ୍ରହ୍ମାଙ୍କ ନିକଟରେ ତା'ର ବିପଦ କଥା ଜଣାଇଲା ଓ ରାଜା ବିଶ୍ୱାନନ୍ଦ ତାକୁ ରାକ୍ଷସ କବଳରୁ ଉଦ୍ଧାର କରିଥିବା ବିଷୟ ବର୍ଣ୍ଣନା କଲା ।

ବ୍ରହ୍ମା ଜାଣିବାକୁ ପାଇଲେ ଯେ, ରାଜା ନିଃସନ୍ତାନ ଥିବାରୁ ସନ୍ତାନ ପ୍ରାପ୍ତି ନିମନ୍ତେ ବଦରୀକା ତୀର୍ଥ ଯାତ୍ରା କରୁଛନ୍ତି । ତାଙ୍କର ବାହ୍ମଣକୁ ରାକ୍ଷସ ହସ୍ତରୁ ରକ୍ଷା କରିଥିବା ହେତୁ ସେ ରାଜା ବିଶ୍ୱାନନ୍ଦଙ୍କ ଉପରେ ପ୍ରୀତ ହୋଇଲେ ଓ ତାଙ୍କୁ 'ରକ୍ତମର୍ଦ୍ଧା' ନାମରେ ଏକ ଅପ୍‌ସରା ପ୍ରଦାନ କଲେ । କହିଲେ, ଅପ୍‌ସରା ରକ୍ତମର୍ଦ୍ଧା ସଙ୍ଗେ ରମଣ କଲେ ଏକ ସୁନ୍ଦରୀ କନ୍ୟା ପ୍ରାପ୍ତି ହେବ ।

ରାଜା ବିଶ୍ୱାନନ୍ଦ ରକ୍ତମର୍ଦ୍ଧା ଅପ୍‌ସରାର ରୂପ ଯୌବନ ଦେଖି ସନ୍ତୋଷ ଲଭକଲେ । କେଦାରେଶ୍ୱରଙ୍କ ନିକଟସ୍ଥ ଉପବନରେ ସେ ସେହି ଅପ୍‌ସରା ସଙ୍ଗରେ ସହବାସ କଲେ । ରାଜା ଓ ଅପ୍‌ସରାର ସହବାସ ଫଳରେ ରକ୍ତମର୍ଦ୍ଧାର ଗର୍ଭୋଦୟ ହେଲା ଓ ଯଥା ସମୟରେ ଏକ କନ୍ୟା ଜନ୍ମ ଦେଇ ସେ ଅଦୃଶ୍ୟ ହେଲା ।

ରାଜା ବିଶ୍ୱାନନ୍ଦ ଉକ୍ତ କନ୍ୟାରତ୍ନକୁ ସଙ୍ଗରେ ନେଇ ନିଜ ରାଜ୍ୟ ଚମ୍ପାନଗରୀକୁ ଫେରି ଆସିଲେ । କନ୍ୟାରତ୍ନକୁ ଦେଖି ନଅରର ସମସ୍ତେ ଖୁସି ହେଲେ ଓ ରାଣୀମାନେ କନ୍ୟାକୁ ଅତି ସ୍ନେହରେ ଲାଳନ ପାଳନ କରିବାକୁ ଲାଗିଲେ । ଉକ୍ତ କନ୍ୟାର ନାମ ହେଲା, "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" ।

କ୍ରମେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନଅର ଭିତରେ ଅଲଅଲରେ ବଢ଼ି ବାଲ୍ୟ ଓ ପୌଗଣ୍ଡ ଅବସ୍ଥା ଅତିକ୍ରମ କରି ଯୌବନାବସ୍ଥାରେ ଉପନୀତ ହେଲା । ତା'ର ନବ ଯୌବନ ଅତୁଳନୀୟ ଥିଲା ଓ କୋଟି ବ୍ରହ୍ମାଣ୍ଡର ସୌନ୍ଦର୍ଯ୍ୟ ତା'ର ଅଙ୍ଗରେ ଭୂଲୀଭୂତ ହୋଇଥିଲା ।

× × × ×

ପାଟଳୀପୁତ୍ର ( ପୁଷ୍ପ ନଗରେ )ର ରାଜା 'ଧାତ୍ରି ସାଗର'ଙ୍କ ପୁତ୍ରର ନାମ 'ପୁଷ୍ପକେତୁ' । ସେ ସର୍ବଗୁଣ ସଂପନ୍ନ ପୁରୁଷଶ୍ରେଷ୍ଠ ଥିଲେ । ସେ ବୀଣା ବାଦନରେ ନିପୁଣ ଥିବାରୁ, ନାରଦ ତାଙ୍କର ବୀଣା ବାଦନରେ ସନ୍ତୁଷ୍ଟ ହୋଇ ଏକ ବର ପ୍ରଦାନ କରିଥିଲେ । ସେହି ବରଦାନ କରି ସେ କହିଥିଲେ, ତୁମର ଏକ ମନୋହାରୀ, ଦିବ୍ୟ ସୁନ୍ଦରୀ କନ୍ୟା ପ୍ରାପ୍ତି ଘଟୁ ।

ଏଣେ ବ୍ରହ୍ମା ନିଜର ବାହନ ହଂସର କନ୍ୟାକୁ ମାନବ ରୂପ ପ୍ରଦାନ ପୂର୍ବକ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନିକଟକୁ ପ୍ରେରଣ କଲେ । ଉକ୍ତ କନ୍ୟାର ନାମ ଥିଲା 'କାଦମ୍ବିନୀ' । ସେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ସଖୀରୂପରେ ଅନ୍ତଃପୁରରେ ରହିବାର ସୁବିଧା ସୁଯୋଗ ଲାଭକଲା । ସଖୀ ଗହଣରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନାନାଚିତ୍ରସ୍ଥ ଉପବନରେ କ୍ରୀଡ଼ା କୌତୁକରେ ସମୟ ଅତିବାହିତ କରିବାକୁ ଲାଗିଲା ।

ଏଣେ ରାଜପୁତ୍ର ପୁଷ୍ପକେତୁ କବି ମୁଖରେ ରାଜକୁମାରୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ଯୌବନ ବର୍ଣ୍ଣନା ଶୁଣି ପ୍ରୀତହୋଇ ତାଙ୍କୁ ସୁବର୍ଣ୍ଣ, ବସ୍ତ୍ର ଇତ୍ୟାଦି ଉପହାର ଦେଲେ ; କିନ୍ତୁ ମନ ମଧ୍ୟରେ ବିଚାର କଲେ, କବି ବର୍ଣ୍ଣିତ କନ୍ୟା ଧରାପୃଷ୍ଠରେ କ'ଣ ସତରେ ସମ୍ଭବ ? ଏ ପ୍ରକାର ପ୍ରଶ୍ନ କରିବାରୁ ଅଜ୍ଞାତ ପୁରୁଷ ମସ୍କରୀ ଉତ୍ତର ଦେଲେ, କବି ବର୍ଣ୍ଣିତ ସୁନ୍ଦରୀ ଧରା ଧାମରେ ଅବତୀର୍ଣ୍ଣା ହୋଇଛି । ସେ ହେଉଛି, ଚମ୍ପାନଗରୀର ରାଜକନ୍ୟା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । କବି ବର୍ଣ୍ଣନା ଠାରୁ ମଧ୍ୟ ସେ ଅଧିକ ସୁନ୍ଦରୀ ।

ପୁଷ୍ପନଗରୀର ରାଜପୁତ୍ର ପୁଷ୍ପକେତୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରତି ଆକୃଷ୍ଟ ହେଲେ ଓ ତାଙ୍କୁ ପାଇବା ନିମନ୍ତେ ଇଚ୍ଛା ପ୍ରକାଶ କଲେ । ଏହା ଶୁଣି ମନ୍ତ୍ରୀ ପୁଷ୍ପକେତୁଙ୍କୁ ସଙ୍ଗରେ ନେଇ ଉପବନରେ କ୍ରୀଡ଼ାରତ ରାଜକୁମାରୀ ସଙ୍ଗରେ ଭେଟ କରାଇବାକୁ ପ୍ରତିଶ୍ରୁତି ଦେଲା ।

ଏଣେ ରାଜକୁମାରୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ରାଜକୁମାର ପୁଷ୍ପକେତୁଙ୍କର ଯଶ ପୌରୁଷ ସଂପର୍କରେ ଶୁଣିବାକୁ ପାଇ ତାଙ୍କ ପ୍ରତି ଆକୃଷ୍ଟ ହେଲା ଓ ତାଙ୍କୁ ପତିରୂପରେ ଲାଭକଲେ ଜୀବନ ସାର୍ଥକ ହେବ ବୋଲି ବିଚାର କଲା ।

ରାଜକୁମାର ଓ ରାଜକୁମାରୀ ପରସ୍ପର ସଙ୍ଗେ ସାକ୍ଷାତ ନ କରି ମଧ୍ୟ, ପରସ୍ପର କଥା ଶ୍ରବ ହେଲେ ଓ ପରସ୍ପରକୁ ଝୁରି ହେଲେ ।

ଫଳରେ ସେହି ବହୁ ବାଞ୍ଛିତ ସୁବର୍ଣ୍ଣ ସୁଯୋଗ ଉପସ୍ଥିତ ହେଲା । ରାଜକୁମାର ପୁଷ୍ପକେତୁଙ୍କ ସଙ୍ଗରେ ରାଜକୁମାରୀ କୋଟି ବ୍ରହ୍ମାଣ୍ଡ-ସୁନ୍ଦରୀର ଭେଟ ହେଲା । ଉଭୟେ ଉଭୟଙ୍କୁ ଦେଖି ମୁଗ୍ଧ ହେଲେ । ବିମୁଗ୍ଧ ନାୟକ ନାୟିକାଙ୍କ ମନରେ ଯୌବନ ସୁଲଭ କାମ ବିକାର ସଂଚାର ହେଲା । ଉଭୟେ ପରସ୍ପରର ସାନ୍ନିଧ୍ୟ ଓ ସ୍ପର୍ଶ କାମନା କଲେ ।

ରାଜକୁମାରୀ, ରାଜକୁମାର ପୁଷ୍ପକେତୁଙ୍କୁ ପୁଷ୍ପମାଲ୍ୟ ଉପହାର ଦେଇ ତା' ମନର ସ୍ନେହ ଅନୁରାଗ ପ୍ରଦର୍ଶନ କଲା । ରାଜକୁମାର ମଧ୍ୟ ରାଜକୁମାରୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀକୁ ପ୍ରତିଦାନ ସ୍ୱରୂପ ନିଜର ପଦକ ପ୍ରଦାନ କରି ତାଙ୍କ ମନର ଅନୁରାଗ ବ୍ୟକ୍ତ କଲେ ।

ଏହାପରେ କୁମାର କୁମାରୀ ଉଭୟେ ପରସ୍ପରର ଅଦର୍ଶନରେ ବିରହ ଦଶା ଭୋଗ କରିବାକୁ ଲାଗିଲେ । ସେମାନଙ୍କୁ କ୍ଷୁଧା ଓ ତୃଷା ଦେଖା ଦେଲାନାହିଁ । ଉଭୟେ ନିଜ ନିଜର ଦେହ ଓ ମନରେ କନ୍ଦର୍ପ ପୀଡ଼ା ଅନୁଭବ କଲେ । ମନେହେଲା, ଦୁହେଁ ଦୁହିଙ୍କୁ ନ ପାଇଲେ ବଞ୍ଚି ପାରିବେ ନାହିଁ ।

ରାଜକୁମାର ଓ ରାଜକୁମାରୀଙ୍କ ମଧ୍ୟରେ ଗୁପ୍ତପତ୍ର ଆଦାନ ପ୍ରଦାନ ଚାଲିଲା । ଉକ୍ତ ପତ୍ରରେ ସେମାନେ ପରସ୍ପରକୁ ସ୍ନେହ ଓ ଅନୁରାଗ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ବିରହ ଜ୍ୱାଳାରେ କିପରି ଘାରି ହେଉଛନ୍ତି, ସେ କଥା ବର୍ଣ୍ଣନା କଲେ ।

ଅବଶେଷରେ ଚମ୍ପାନଗରୀର ରାଜଜେମା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସଙ୍ଗରେ ପୁଷ୍ପନଗରୀ (ପାଟଳୀପୁତ୍ର)ର ରାଜପୁତ୍ର ପୁଷ୍ପ କେତୁଙ୍କର ବିବାହ ମହାସମାରୋହରେ ଅନୁଷ୍ଠିତ ହେଲା । ବହୁ ପ୍ରଶଂସିତ ମଧୁଶଯ୍ୟା ଗୃହରେ କାନ୍ତ-କାନ୍ତାଙ୍କ ଏକାନ୍ତ ମିଳନ ସଂଘଟିତ ହେଲା । ମିଳନ ସୁଖରେ ପ୍ରମତ୍ତ ରହି ସେମାନେ ରାତ୍ରି ପୁହାଇ ଦେଲେ ।



# ସୁଭଦ୍ରା ପରିଣୟ

ଉପେନ୍ଦ୍ର ଭଞ୍ଜଙ୍କ 'ସୁଭଦ୍ରା ପରିଣୟ' କାବ୍ୟ ସାରଳା ମହାଭାରତର 'ମଧ୍ୟ ପର୍ବ'ରେ ବର୍ଣ୍ଣିତ 'ସୁଭଦ୍ରାହରଣ'ର ଭିତ୍ତି ଭୂମି ଉପରେ ପ୍ରତିଷ୍ଠିତ ଏକ ପୌରାଣିକ କାବ୍ୟ ।

ଏ କାବ୍ୟର ବିଷୟବସ୍ତୁରେ କୌଣସି ନୂତନତା ନ ଥିଲେ ମଧ୍ୟ ବିଷୟ ବିନ୍ୟାସର ଅପୂର୍ବ କୌଶଳ, ବଳିଷ୍ଠ ଭାଷା ସଂପଦ ଓ ବିଭିନ୍ନ ଛନ୍ଦ ଓ ରାଗର ସମନ୍ୱୟରେ ଏ କାବ୍ୟ ରୀତି ଯୁଗୀୟ ପୌରାଣିକ କାବ୍ୟମାନଙ୍କ ମଧ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି ।

କବି ଉପେନ୍ଦ୍ର ଭଞ୍ଜ ପାରଂପରିକ ରୀତିରେ ପ୍ରଥମେ ଉତ୍କଳୀୟ ଇଷ୍ଟଦେବ 'ଜଗନ୍ନାଥ'ଙ୍କର ବନ୍ଦନା କରିବା ପରେ କାବ୍ୟ-କାହାଣୀର ଉନ୍ମୋଚନ କରିଅଛନ୍ତି ।

କାହାଣୀଟି ହେଲା, କାବ୍ୟ ନାୟିକା ସୁଭଦ୍ରା, ବଳଦେବ ଓ ଶ୍ରୀକୃଷ୍ଣଙ୍କର ଭଗିନୀ ରୂପେ ଭୂମିଷ୍ଠ ହେବାପରେ ବାଲ୍ୟ, ପୌଗଣ୍ଡ ଅବସ୍ଥା ଅତିକ୍ରମ କରି ଯୌବନାବସ୍ଥାରେ ଉପନୀତ ହୋଇଅଛନ୍ତି ।

ନବ ଯୌବନ ପ୍ରାପ୍ତା ଭଗିନୀ ସୁଭଦ୍ରାର ଉପଯୁକ୍ତ ବରପାତ୍ର ସନ୍ଧାନ ନିମନ୍ତେ, ଜ୍ୟେଷ୍ଠ ଭ୍ରାତା ବଳଦେବ ରୈବତରେ ଏକ ଯଜ୍ଞ ଆୟୋଜନ କରିଅଛନ୍ତି । ବିଭିନ୍ନ ରାଜ୍ୟର ରାଜାମାନଙ୍କୁ

ଏଥିରେ ଯୋଗଦାନ କରିବା ନିମନ୍ତେ ନିମନ୍ତ୍ରଣ ପଠାଯାଇଛି । ବିଭିନ୍ନ ଦେଶର ରାଜନ୍ୟ ମଣ୍ଡଳୀ ଯଜ୍ଞ ସ୍ଥଳୀରେ ସମବେତ ହୋଇଅଛନ୍ତି ।

ଇତ୍ୟବସରରେ ଗୋ ସିଂହ ଦୈତ୍ୟ ସେଠାରେ ଉପସ୍ଥିତ ହୋଇ, ବହୁ ସୈନ୍ୟ ସାମନ୍ତ ଓ ରାଜନ୍ୟ ମଣ୍ଡଳଙ୍କୁ ହତ୍ୟା କରିଛି ଓ ଯଜ୍ଞରେ ବାଧା ଉପୁଜାଇଛି । ଏହାପରେ ଶ୍ରୀକୃଷ୍ଣଙ୍କ ପତ୍ନୀ ସତ୍ୟଭାମାଙ୍କୁ ବଳତ୍କାର ହରଣ କରିନେଇଛି ।

ଏହା ଦେଖି ବୀର ଶ୍ରେଷ୍ଠ ଅର୍ଜ୍ଜୁନ ପ୍ରବଳ ପ୍ରତାପୀ ଗୋ ସିଂହ ଦୈତ୍ୟର ପ୍ରତିରୋଧ କରିଅଛନ୍ତି । ସେ ଦୁହିଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ହୋଇଛି । ଅବଶେଷରେ ବୀର ଅର୍ଜ୍ଜୁନ ସତ୍ୟଭାମା, ବଳରାମ ଓ ଶ୍ରୀକୃଷ୍ଣ ତଥା ସମଗ୍ର ଯାଦବ କୁଳକୁ ଗୋ ସିଂହ ଦୈତ୍ୟ କବଳରୁ ରକ୍ଷା କରିବାରେ ସମର୍ଥ ହୋଇଅଛନ୍ତି । ସମସ୍ତେ ଅର୍ଜ୍ଜୁନଙ୍କ ପ୍ରଶଂସାରେ ଶତମୁଖ ହୋଇ ଉଠିଛନ୍ତି । ଯୁଦ୍ଧର ପରିସମାପ୍ତି ପରେ ଶୁଭ-ଯଜ୍ଞ କାର୍ଯ୍ୟ ସମାହିତ ହୋଇଛି ।

ପରାକ୍ରମଶାଳୀ ଅର୍ଜ୍ଜୁନଙ୍କ ଶୌର୍ଯ୍ୟ, ବୀର୍ଯ୍ୟ, ଯଶ ଓ ଗୌରବର ଭୂୟସୀ ପ୍ରଶଂସା କରି ରାମକୃଷ୍ଣଙ୍କ ସମେତ ସମସ୍ତ ଯାଦବ ତାଙ୍କୁ ସମ୍ମାନିତ କରିବା ନିମନ୍ତେ ଏକ ଉତ୍ସବର ଆୟୋଜନ କରିଛନ୍ତି । ଉକ୍ତ ଉତ୍ସବରେ କାବ୍ୟ ନାୟିକା ସୁନ୍ଦରୀ ସୁଭଦ୍ରା ଯଦୁକୁଳ ରମଣୀମାନଙ୍କ ସଙ୍ଗରେ ଅର୍ଘ୍ୟଥାଳୀ ନେଇ ଅର୍ଜ୍ଜୁନଙ୍କୁ ବନ୍ଦାପନା କରିବା ନିମନ୍ତେ ତାଙ୍କ ସମ୍ମୁଖରେ ପ୍ରବେଶ ହୋଇଛନ୍ତି ।

ବନ୍ଦାପନା ଉତ୍ସବରେ ସୁସଜ୍ଜିତା ଯୁବତୀ ସୁଭଦ୍ରାଙ୍କୁ ଦେଖି ବୀର ଅର୍ଜ୍ଜୁନଙ୍କ ମନରେ ପ୍ରଗାଢ଼ ଅନୁରାଗ ସୃଷ୍ଟି ହୋଇଛି ।

ସେହିପରି ଅର୍ଜ୍ଜୁନଙ୍କ ରୂପ ଲାବଣ୍ୟ ଦେଖି ଓ ତାଙ୍କ ଯଶ ପୌରୁଷରେ ଅଭିଭୂତା ହୋଇ ଯୁବତୀ ସୁଭଦ୍ରା ତାଙ୍କ ପ୍ରତି ଆସକ୍ତ ହୋଇ ଉଠିଛନ୍ତି । ବନ୍ଦାପନା ଉତ୍ସବର ଆନନ୍ଦଦାୟକ ପରିବେଶ ନାୟକ ନାୟିକାଙ୍କ ହୃଦୟରେ ପ୍ରେମ-ବୀଜ ବପନ କରିବାରେ ସହାୟକ ହୋଇଛି ।

ସୁଭଦ୍ରା ଓ ଅର୍ଜ୍ଜୁନଙ୍କର ଗୁରି ଚକ୍ଷୁର ଅପୂର୍ବ ମିଳନ ଘଟିଛି । ଉଭୟେ ନିଜ ନିଜ ଅଙ୍ଗରେ ପ୍ରେମ ଜନିତ ଶିହରଣ ଉପଲବ୍ଧି କରିଛନ୍ତି ।

ରୂପସୀ ସୁଭଦ୍ରା ଅର୍ଜ୍ଜୁନଙ୍କ ଠାରେ କେବଳ ବୀରତ୍ୱ ନୁହେଁ, ପ୍ରେମିକତ୍ୱର ସ୍ପଷ୍ଟ ଆଭାସ ପାଇ ନିଜ ମନକୁ ପ୍ରେମିକାର ହୃଦୟ ଭିତରେ ହଜେଇ ଦେଇଛନ୍ତି । ସେ ଏକ ଅପୂର୍ବ, ଅନନୁଭୂତ ଅବସ୍ଥା । ପ୍ରେମ କ୍ଷେତ୍ରରେ ନୂଆ ପାଦ ପକାଇଥିବା ରୂପସୀ ସୁଭଦ୍ରା ଏପରି ଭାବରେ ମୁଗ୍‌ଧା ଓ ଭାବ ବିହ୍ୱଳା ହୋଇ ପଡ଼ିଛନ୍ତି ଯେ, ତାଙ୍କର ସମଗ୍ର ଶରୀର କମ୍ପି ଉଠିଛି । କମ୍ପିତ ହସ୍ତରୁ ବନ୍ଦାପନା ସାମଗ୍ରୀ ଖସିପଡ଼ିଛି । ଉତ୍ସବରେ ସେ ଏକ ଅପ୍ରତ୍ୟାଶିତ ଦୃଶ୍ୟ ସୃଷ୍ଟି କରି ବସିଛନ୍ତି ।

ଶ୍ରୀକୃଷ୍ଣ ଭଗିନୀ ସୁଭଦ୍ରାଙ୍କ ଅନ୍ତର ଅଭିଳାଷକୁ ନିର୍ଭୁଲ ଭାବରେ ଅଧ୍ୟୟନ କରି ପାରିଛନ୍ତି । ଏ ଅବସ୍ଥାର ସମାଧାନ ସଂପର୍କରେ ଚିନ୍ତା କରୁ କରୁ ସେ ଘଟଣାସ୍ଥଳରୁ ନୀରବ ପାଲଟି ଯାଇଛନ୍ତି ।

ଅନ୍ତଃପୁରକୁ ଫେରିଯିବା ପରେ ମଧ୍ୟ ସୁଭଦ୍ରାଙ୍କ ମନରେ ଶାନ୍ତି ନାହିଁ । ତାଙ୍କର ସହସା ଗାତ୍ରଦାହ ଆରମ୍ଭ ହୋଇଯାଇଛି ।

ଭଗିନୀ ସୁଭଦ୍ରାଙ୍କୁ ଏପରି ପରିସ୍ଥିତିରୁ ରକ୍ଷା କରିବା ନିମନ୍ତେ ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ନିଭୃତ ପରାମର୍ଶ ପ୍ରଦାନ କରିଅଛନ୍ତି ।

ଶ୍ରୀକୃଷ୍ଣଙ୍କ ପରାମର୍ଶ ଗ୍ରହଣ କରି ସତ୍ୟଭାମା ସୁଭଦ୍ରାଙ୍କୁ ସଙ୍ଗରେ ନେଇ ଅର୍ଜୁନଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି ଓ ସୁଭଦ୍ରାଙ୍କୁ ଗ୍ରହଣ କରିବାକୁ କାତର ଅନୁରୋଧ ଜ୍ଞାପନ କରିଛନ୍ତି, କିନ୍ତୁ ଅର୍ଜୁନ ଏ ପ୍ରସ୍ତାବର ଆଗପଛ ବିଚାର କରି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ପାରି ନାହାନ୍ତି । ତେଣୁ ସେ ସତ୍ୟଭାମାଙ୍କ ଅନୁରୋଧ ରକ୍ଷା କରି ନାହାନ୍ତି ।

ଏଭଳି ଏକ ପରିସ୍ଥିତିରେ ଉଲ୍ଲୁକ ବିଦ୍ୟା ପ୍ରୟୋଗ କରାଯାଇ ଅର୍ଜୁନଙ୍କ ମତର ପରିବର୍ତ୍ତନ କରାଯାଇ ପାରିଛି । ଠିକ ପୂର୍ବରୁ ସୁଭଦ୍ରାଙ୍କୁ ପତ୍ନୀ ରୂପେ ଗ୍ରହଣ କରିବା ନିମନ୍ତେ ଯେଉଁ ଅର୍ଜୁନ ଅନିଚ୍ଛା ପ୍ରକାଶ କରୁଥିଲେ, ଏହି ବିଦ୍ୟା ପ୍ରଭାବରେ ସେ ସୁଭଦ୍ରାଙ୍କୁ ପତ୍ନୀ ରୂପେ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିଅଛନ୍ତି । ସୁଭଦ୍ରା ଇପ୍‌ସିତ ପୁରୁଷର ସାନ୍ନିଧ୍ୟ ଲାଭ କରି ସାତିଶୟ ଆନନ୍ଦ ଲାଭ କରିଛନ୍ତି । ଅର୍ଜୁନ ଓ ସୁଭଦ୍ରା ଯାଦବ ରମଣୀଙ୍କ ସଂପୂର୍ଣ୍ଣ ଅଗୋଚରରେ ପତିପତ୍ନୀ ରୂପେ କାଳଯାପନ କରିଛନ୍ତି ।

ଏକଦା ଯାଦବ ରମଣୀମାନେ ଜଳ କ୍ରୀଡ଼ା ସମୟରେ ସୁଭଦ୍ରାଙ୍କ ବକ୍ଷ ଦେଶରେ ନଖ କ୍ଷତମାନ ଦେଖି ଆତଙ୍କ ପ୍ରକାଶ କରିଛନ୍ତି । ସେମାନେ ସ୍ପଷ୍ଟ ଭାବରେ ହୃଦୟଙ୍ଗମ କରି ପାରିଛନ୍ତି ଯେ, ସୁଭଦ୍ରା ତାଙ୍କର କୁମାରୀତ୍ୱକୁ ବିସର୍ଜନ କରିଅଛନ୍ତି । ସେ ପ୍ରଣୟାସକ୍ତ ଜୀବନ ଯାପନ କରିଛନ୍ତି । ଅବଶେଷରେ ବଳରାମଙ୍କ କାନକୁ କଥା ଯାଇଛି ।

ଯାଦବ ଜ୍ୟେଷ୍ଠ ବଳରାମ ଅନେକ ଭାବ ସ୍ଥିର କରିଛନ୍ତି, କୁରୁଚୂଡ଼ାମଣି ଦୁର୍ଯ୍ୟୋଧନ ହିଁ ସୁଭଦ୍ରାଙ୍କ ପାଇଁ ଉପଯୁକ୍ତ ପାତ୍ର । ସୁଭଦ୍ରାଙ୍କ ପରିଣୟ ପାଇଁ ସେ ଦୁର୍ଯ୍ୟୋଧନଙ୍କ ନିକଟକୁ ଦୂତ ପଠାଇଛନ୍ତି । ଦୂତ ମୁଖରୁ ବାର୍ତ୍ତା ପାଇ କୁରୁକୁଳ ଯାଦବମାନେ ବାସ କରୁଥିବା ରୈବତ ଉଦ୍ୟାନରେ ଯାତ୍ରା ଆରମ୍ଭ କରିଛନ୍ତି । କିନ୍ତୁ ପାଣ୍ଡୁପୁତ୍ର ସହଦେବ ଗଣନା କରି ଜାଣି ପାରିଛନ୍ତି ଯେ, ସୁଭଦ୍ରାଙ୍କ ସଙ୍ଗରେ ଦୁର୍ଯ୍ୟୋଧନଙ୍କ ବିବାହ କଦାପି ସମ୍ଭବ ନୁହେଁ ।

କୁରୁକୁଳର ଆଗମନରେ ଯାଦବମାନେ ଉତ୍ସାହିତ ହୋଇଛନ୍ତି । ଯାଦବ ରମଣୀମାନେ ସୁଭଦ୍ରାଙ୍କ ବିବାହ ପାଇଁ ତତ୍ପରତା ପ୍ରକାଶ କରିଛନ୍ତି । କିନ୍ତୁ ସମଗ୍ର କୁରୁକୁଳ ଓ ବଳରାମଙ୍କ ଆୟୋଜନ ପ୍ରତି ଭ୍ରୂକ୍ଷେପ ନ କରି ପ୍ରେମିକ ଅର୍ଜୁନ ତାଙ୍କର ପ୍ରେମିକା ସୁଭଦ୍ରାଙ୍କୁ ସଙ୍ଗରେ ନେଇ ସେଠାରୁ ପଳାୟନ କରିବାକୁ ଚେଷ୍ଟା କରିଛନ୍ତି ।

ଅର୍ଜୁନ ଓ ସୁଭଦ୍ରାଙ୍କ ପ୍ରେମ, ପରିଣୟ ଆଉ ଗୋପନ ହୋଇ ରହି ନାହିଁ । କୁରୁକୁଳ ସଙ୍ଗେ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ପଡ଼ିଛି । ଅର୍ଜୁନଙ୍କ ବୀରତ୍ୱ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ପ୍ରକାଶ କରିଛନ୍ତି । ଶେଷରେ ଯାଦବ କୁଳ ଜ୍ୟେଷ୍ଠ ବଳରାମ ଅର୍ଜୁନଙ୍କୁ ଅଜେୟ ବୋଲି ଜାଣି ତାଙ୍କ ସଙ୍ଗରେ ସନ୍ଧି ସ୍ଥାପନ କରିଛନ୍ତି ଏବଂ ଭଗ୍ନୀପତି ରୂପେ ତାଙ୍କୁ ବରଣ କରିଛନ୍ତି । ଶ୍ରୀକୃଷ୍ଣ ଏଥିରେ ସହାୟତା କରିଛନ୍ତି ।

କୁରୁକୁଳର ସକଳ ଦମ୍ଭ ଓ ସାହସ ଧୂଳିସାତ ହୋଇଛି । ସେମାନେ ସଲଜ୍ଜ ବଦନରେ ସେଠାରୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ।



# ବୈଦେହୀଶ ବିଳାସ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜେ ତାଙ୍କର 'ବୈଦେହୀଶ ବିଳାସ' କାବ୍ୟରେ ଉଲ୍ଲେଖ କରିଅଛନ୍ତି—

"ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି ।
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ।"

ଭାରତୀୟ ଦର୍ଶନର ଧାରାରେ ବୈଦେହୀ ଈଶ ରାମଚନ୍ଦ୍ରଙ୍କ ଜୀବନ କାହାଣୀ ଅତ୍ୟନ୍ତ ତାତ୍ପର୍ଯ୍ୟ ପୂର୍ଣ୍ଣ । ସେ ଏକାଧାରରେ ଆଧ୍ୟାତ୍ମିକ, ଲୌକିକ ଓ ବୌଦ୍ଧିକ ଚେତନାର ମୂର୍ତ୍ତିମନ୍ତ ପ୍ରକାଶ ବୋଲି ଗୃହୀତ ହୋଇଥାନ୍ତି । ରାମାୟଣ ଗ୍ରନ୍ଥ ସେହିପରି ହିନ୍ଦୁଧର୍ମର ଆଦର୍ଶ ଗ୍ରନ୍ଥ ରୂପେ ବିଶ୍ୱବିଖ୍ୟାତ ।

'ବୈଦେହୀଶ ବିଳାସ' ରାମାୟଣ କଥାବସ୍ତୁ ଉପରେ ଆଧାରିତ ଏକ ମାର୍ଜିତ ଖଣ୍ଡ କାବ୍ୟ । ପୁରାତନ କଥାବସ୍ତୁକୁ ସେ ମାର୍ଜିତ ରୂପରେ ପରିବେଷଣ କରିଛନ୍ତି । ନିଜର ପ୍ରତିଭାଦୀପ୍ତ କବିତ୍ୱକୁ ଅମରତ୍ୱ ପ୍ରଦାନ କରିବା ତଥା ପାଠକ ସମାଜରେ ପ୍ରତିଷ୍ଠାଲାଭ କରିବା ନିମନ୍ତେ ସେ ସଚେତନ ରହି, ପୁରୁଣା ବିଷୟବସ୍ତୁରେ ଆବଶ୍ୟକ ସ୍ଥଳେ ପରିବର୍ଦ୍ଧନ, ପରିବର୍ତ୍ତନ, ସଂକୁଚନ ଓ ସଂପ୍ରସାରଣ କରିଅଛନ୍ତି ।

ବୈଦେହୀଶ ବିଳାସର ପ୍ରଥମ ଛାନ୍ଦରେ ସେ ଉଲ୍ଲେଖ କରିଛନ୍ତି :

"ବାଲ୍ମିକୀ ବ୍ୟାସ କବି ପର୍ବରେ ମହାକାବ୍ୟ ଏକେ ରଚନା କଲେ
ମହାନାଟକେ ବାତ ସୁତରେ ହେଲେ ରଚିତ ଯେ ।

ବିହିଲେ କାବ୍ୟ ଯେ କାଳିଦାସ ଚମ୍ପୂ ରଚନା ଭୋଜନରେ
କୃପା ସିଦ୍ଧାପ୍ଟେ ଗୀତ ପ୍ରକାଶ ଗୁଡ଼ିଲା ଚିନ୍ତା ଯେ ।

ବିବେକ ହିଁ ଏମନ୍ତ ହୃଦରେ ଧ୍ୟାୟି ଯେ
ବ୍ୟୋମେ ତାରକା ଯେହ୍ନେ ଝଲକୁ ଥାଇ ଯେ ।

ଦିବ୍ୟବସ୍ଥରେ ଜ୍ୟୋତିରିଙ୍ଗଣ ଗଣ ଜ୍ୟୋତି କି ଦେଖାନ୍ତି ପୁଣ
ସୁଜନେ ସାବଧାନରେ ଶୁଣ ଗୀତ ରଚଇ ଯେ ।"

ଆଦି କବି ବାଲ୍ମିକୀ, ବିଖ୍ୟାତ ସଂସ୍କୃତ ମହାନାଟକ ପ୍ରଣେତା ହନୁମନ୍ତ, ସ୍ୱନାମଧନ୍ୟ ଚମ୍ପୂକାର ଭୋଜରାଜ, ମହାକବି କାଳିଦାସ ପ୍ରଭୃତି ବିଖ୍ୟାତ କବିମାନଙ୍କ ଦ୍ୱାରା ରାମଚନ୍ଦ୍ରଙ୍କ ଜୀବନ ଚରିତ ପ୍ରକାଶ ପାଇଛି । ସେହି ପୁରାତନ ବିଷୟବସ୍ତୁକୁ ନୂତନ-ତା'ରେ ଶାଣିତ କରିବା ଓ ଲୋକ ଲୋଚନକୁ ଆଣିବା ନିମନ୍ତେ ଭଞ୍ଜଙ୍କ ମାନସ ରାଜ୍ୟରେ ବିପୁଳ ଆଲୋଡ଼ନ ସୃଷ୍ଟି ହେବା ସ୍ୱାଭାବିକ । ତଥାପି ପୂର୍ବ ସୂରିମାନଙ୍କୁ ସ୍ମରଣ କରି ସେ କହିଛନ୍ତି, ରାତ୍ରି କାଳରେ ଅକାଶରେ ତା'ରକାମାନେ ଶୋଭା ପାଆନ୍ତି । ତଥାପି ଜ୍ୟୋତିରିଙ୍ଗଣ ମାନେ ମଧ୍ୟ ନିଜ ଦେହର ଜ୍ୟୋତି ପ୍ରକାଶ କରିଥା'ନ୍ତି । ସେହି ନ୍ୟାୟରେ ସେ ବୈଦେହୀଶ ବିଳାସ ପରି କାବ୍ୟ ରଚନାରେ ବ୍ରତୀ ହେଲେ ।

× × × ×

ବୈଦେହୀଶ ବିଳାସ ନାମ କରଣରୁ ଏହି କାବ୍ୟର କାହାଣୀ ସ୍ପଷ୍ଟଂ ସୂଚିତ ହୁଏ । ଭଞ୍ଜ ଏଥିରେ ରାମଚନ୍ଦ୍ରଙ୍କ ଜନ୍ମଠାରୁ ରାବଣବଧ ଓ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରିଅଛନ୍ତି ।

ଖଳନାୟକ ରାବଣର ଜନ୍ମ ବୃତ୍ତାନ୍ତଠାରୁ ଏହି କାବ୍ୟର କଥାବସ୍ତୁ ଆରମ୍ଭ ହୋଇଛି । ରାବଣ କ୍ରମେ ବଡ଼ ହୋଇ ଅଚଳା ଶକ୍ତିର ଅଧିକାରୀ ହେବା ପାଇଁ ଘୋର ତପସ୍ୟାରେ ନିମଗ୍ନମାନ ହେଲା । ତପସ୍ୟା ଲବ୍ଧ ଶକ୍ତିବଳରେ ସେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ଭୁବନରେ ଅଧିକାର ସାବ୍ୟସ୍ତ କଲା । ତା'ର ଉତ୍ପୀଡ଼ନ ଓ ଅତ୍ୟାଚାର ଫଳରେ ଦେବମାନବ ସମସ୍ତେ ଭୟଭୀତ ହେଲେ । ଦୁଷ୍ଟ ରାକ୍ଷସର କବଳରୁ ରକ୍ଷା ପାଇବା ନିମନ୍ତେ ଦେବତାମାନେ ବ୍ରହ୍ମାଙ୍କ ସଙ୍ଗରେ କ୍ଷୀରସିନ୍ଧୁ ନିବାସୀ ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହୋଇ ଗୁହାରି କଲେ । ବିଷ୍ଣୁ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ, ସେ ମର୍ତ୍ତ୍ୟଲୋକରେ ରାଜା ଦଶରଥଙ୍କ ପୁତ୍ର ରୂପେ ମାନବ ଅବତାର ଧାରଣ କରିବେ । ସେତେବେଳେ ସେ ଦୁଷ୍ଟ ଦଳନ କରି ସନ୍ଥ ପାଳନ କରିବେ ।

ଇତ୍ୟବସରରେ ଚମ୍ପାବତୀ ରାଜ୍ୟରେ ବର୍ଷାଭାବ ହାହାକାର ପଡ଼ିଯାଇଛି । ଋଷି ଋଷ୍ୟଶୃଙ୍ଗଙ୍କୁ ଆଣିଲେ ଚମ୍ପାବତୀ ରାଜ୍ୟରେ ବର୍ଷା ହେବ ବୋଲି ଜାଣିପାରି ରାଜା ଲୋମପାଦ ତାଙ୍କୁ ଆଣିବା ପାଇଁ ରାଜ୍ୟରେ ଢେଣ୍ଡୁରା ବଜାଇ ପ୍ରଚାର କଲେ । ବେଶ୍ୟା ଜରତା ଋଷିଙ୍କ ମନ ଭୁଲାଇ ରାଜ୍ୟକୁ ନେଇ ଆସିବ ବୋଲି ପ୍ରଚାର କଲା । ସେ ଅନେକ ସୁନ୍ଦରୀ ଦାସୀଙ୍କ ସଙ୍ଗରେ ନୌକାରେ ଗମନ କଲା ଓ ମୋହନ, ଉଚ୍ଚାଟନ ପ୍ରଭୃତି ସାହାଯ୍ୟରେ ଋଷିଙ୍କ ମନ ଭୁଲାଇ ରାଜା ଲୋମପାଦଙ୍କ ରାଜଧାନୀକୁ ନେଇ ଆସିଲା ।

ଏହାପରେ ମିତ୍ର ଅଙ୍ଗ ଦେଶର ରାଜା, ଋଷ୍ୟଶୃଙ୍ଗ ଋଷିଙ୍କ ଅନୁକୂଳରେ ଅନୁଷ୍ଠିତ ଯଜ୍ଞରୁ ଯଜ୍ଞ-ଅନ୍ନ ବା ଚରୁପାୟସାନ୍ନକୁ ଦଶରଥ ଗ୍ରହଣ କରି ତିନିରାଣୀଙ୍କୁ ଦେଲେ । ତିନିରାଣୀ ସେହି

ଚରୁସେବନ କରି ଗର୍ଭବତୀ ହେଲେ । କୌଶଲ୍ୟାଙ୍କ ଗର୍ଭରୁ ରାମଚନ୍ଦ୍ର, କୈକେୟୀଙ୍କ ଗର୍ଭରୁ ଭରତ ଓ ସୁମିତ୍ରାଙ୍କ ଗର୍ଭରୁ ଲକ୍ଷ୍ମଣ, ଶତ୍ରୁଘ୍ନ ଜନ୍ମଲାଭ କଲେ ।

ଶ୍ରୀ ରାମଚନ୍ଦ୍ର ବାଲ୍ୟକାଳରୁ ବେଦ ବିଦ୍ୟା, ଯୁଦ୍ଧ ବିଦ୍ୟା ଇତ୍ୟାଦି ଶିକ୍ଷା କରିବାକୁ ଲାଗିଲେ । ଋଷି ବିଶ୍ୱାମିତ୍ର ତାଙ୍କର ଗୁରୁଥିଲେ ଓ ତାଙ୍କ ନିକଟରୁ ବହୁ ବିଦ୍ୟା ଲାଭ କରିଥିଲେ ।

ସେହି ସମୟରେ ଅସୁରମାନେ ଋଷିମାନଙ୍କୁ ଉତ୍ପୀଡ଼ନ କରୁଥିଲେ । ଋଷିମାନଙ୍କ ଯଜ୍ଞସ୍ଥଳୀକୁ ଆସି ବିଘ୍ନ ଘଟାଉଥିଲେ । ଫଳରେ ଆଶ୍ରମବାସୀ ମୁନି ଋଷିମାନେ ତପସ୍ୟା କରି ପାରୁ ନଥିଲେ ଓ ମାନସିକ ଅଶାନ୍ତ ଭୋଗ କରୁଥିଲେ । ଋଷି ବିଶ୍ୱାମିତ୍ର ଶ୍ରୀ ରାମଚନ୍ଦ୍ରଙ୍କୁ ଏହି ରାକ୍ଷସକୁଳର ଉପଦ୍ରବରୁ ବନବାସୀ ମୁନି ଋଷିମାନଙ୍କୁ ରକ୍ଷା କରିବା ନିମନ୍ତେ ବନକୁ ନେଇଗଲେ । ସେଠାରେ ରାମଚନ୍ଦ୍ର ସୁବାହୁ ନାମକ ଏକ ଅସୁରକୁ ନିପାତ କଲେ । ମାରୀଚ ନାମକ ଏକ ଅସୁରକୁ ଶରମାରି ନିଧନ କଲେ । ଚଲା ପଥରେ ପଥର ପାଲଟି ଯାଇଥିବା ଅହଲ୍ୟାଙ୍କୁ ପଦସ୍ପର୍ଶ ଦେଇ ମୋକ୍ଷ କଲେ । ଗଙ୍ଗାନଦୀ ପାରି ହେଲାବେଳେ ବିଜ୍ଞାନୀ କୈବର୍ତ୍ତକୁ ନିଜ ପଦ ଧୌତ କରିବାର ସୁଯୋଗ ପ୍ରଦାନ କରି ତାକୁ ଅଭିଳଷିତ ମୁକ୍ତି ପ୍ରଦାନ କରିଥିଲେ ।

ଏହାପରେ ମିଥିଳା ରାଜ ଦରବାରରେ ଅନୁଷ୍ଠିତ ରଙ୍ଗ ସଭାରେ ସମବେତ ରାଜନ୍ୟ ମଣ୍ଡଳର ଗର୍ବ ଚୂର୍ଣ୍ଣ କରି ଅପୂର୍ବ ଶକ୍ତି ବଳରେ ଶିବଧନୁ ଭାଙ୍ଗି ଜନକ ନନ୍ଦିନୀ ଜାନକୀଙ୍କୁ ବିବାହ କରିଥିଲେ ।

ପୁଣି ଅହଂ ଗୁଣ ସଂପନ୍ନ ବିଦ୍ବଗ ବିଜୟୀ ପର୍ଶୁରାମଙ୍କ ଗର୍ବକୁ ଖର୍ବ କରି ପିତା ଦଶରଥଙ୍କ ହୃଦୟରୁ ସମସ୍ତ ଭୟ ନିବାରଣ କଲେ ।

ଏହାପରେ ରଜା ଦଶରଥ ଜ୍ୟେଷ୍ଠ ପୁତ୍ର ରାମଚନ୍ଦ୍ରଙ୍କ ହସ୍ତରେ ରାଜ୍ୟଭାର ସମର୍ପଣ କରିବାକୁ ସ୍ଥିର କଲେ । କାରଣ ରାମଚନ୍ଦ୍ର ଥିଲେ ସର୍ବଗୁଣ ସଂପନ୍ନ ଯୋଗ୍ୟତମ ସନ୍ତାନ । ସେ ରାଜ ସିଂହାସନରେ ଅଭିଷିକ୍ତ ହେବା ପାଇଁ ସବୁ ଆୟୋଜନ ସରିଲା । ରାଜ୍ୟର ଆବାଳବୃଦ୍ଧ ଜନତା ଏ ସମ୍ବାଦ ଶୁଣି ଖୁସି ହେଲେ । ଆନନ୍ଦ ଉତ୍ସବର ଆୟୋଜନ ମଧ୍ୟ ଚାଲିଲା ।

କିନ୍ତୁ ବିଧିର ବିଧାନ ବିଚିତ୍ର । ଦାସୀ ମନ୍ଥରାର କୁମନ୍ତ୍ରଣା ଫଳରେ ମହାରାଜ ଦଶରଥଙ୍କ ଦ୍ୱିତୀୟ ରାଣୀ କୈକେୟୀ ଦଶରଥଙ୍କୁ ଦତ୍ତ ଦିନର ବାକିଆ ବର ମାଗି କହିଲେ, ରାମଚନ୍ଦ୍ର ଚଉଦବର୍ଷ ବନବାସ କରନ୍ତୁ ଓ ଭରତ ରାଜା ହୁଅନ୍ତୁ । ଫଳତଃ ରାମଚନ୍ଦ୍ର ପିତୃ ସତ୍ୟ ପାଳନ ନିମନ୍ତେ ବନବାସୀ ହେଲେ । ଅନୁଜ ଲକ୍ଷ୍ମଣ ଓ ପତ୍ନୀ ଜାନକୀ ମଧ୍ୟ ଶ୍ରୀ ରାମଚନ୍ଦ୍ରଙ୍କ ସଙ୍ଗରେ ବନକୁ ଗମନ କଲେ ।

ରାମଚନ୍ଦ୍ରଙ୍କ ଅଭିଷେକ ଉତ୍ସବ ମଉଳି ଗଲା । ରାଜ୍ୟବାସୀ ଏ ଦାରୁଣ ସମ୍ବାଦ ଶୁଣି ହାହାକାର କଲେ । ଦଶରଥଙ୍କ ହୃତ ସଂଜ୍ଞା ଆଉ ଫେରିଲା ନାହିଁ ।

ମାତୁଳାଳୟରୁ ଫେରିବା ପରେ ଭରତ ଏହି ଦାରୁଣ ସମ୍ବାଦ ଶୁଣି ମର୍ମାହତ ହେଲେ । ସେ ଅଗ୍ରଜ ଶ୍ରୀ ରାମଚନ୍ଦ୍ରଙ୍କୁ ବନବାସରୁ ସ୍ୱରାଜ୍ୟକୁ ଫେରାଇ ଆଣିବା ପାଇଁ ଯାତ୍ରା କଲେ ।

ସେତେବେଳେ ରାମଚନ୍ଦ୍ର ଚିତ୍ରକୂଟରେ ବାସ କରୁଥିବା ସମ୍ବାଦ ପାଇ ଭ୍ରାତୃଭକ୍ତ ଭରତ ଚିତ୍ରକୂଟରେ ଯାଇ ପହଞ୍ଚିଲେ । ସେଠାରେ ସେ ରାମଚନ୍ଦ୍ରଙ୍କୁ ଦର୍ଶନ କରି ରାଜସିଂହାସନକୁ ଫେରି ଆସିବା ପାଇଁ ପ୍ରାର୍ଥନା କଲେ । କିନ୍ତୁ ରାମଚନ୍ଦ୍ର ଏଥିରେ ରାଜି ହେଲେ ନାହିଁ । ସେ ଭରତଙ୍କୁ ରାଜ୍ୟ ଶାସନ କରିବାକୁ ପରାମର୍ଶ ଦେଇ ଫେରାଇ ଦେଲେ ।

ବନବାସ କାଳରେ ସେ ବିରାଧ ନାମକ ରାକ୍ଷସକୁ ବଧ କଲେ ଓ ବ୍ରହ୍ମାଙ୍କ ନିକଟରୁ ବହୁ ଅସ୍ତ୍ର ଲାଭ କଲେ । ପତିବ୍ରତା ସୀତା ମଧ୍ୟ ଅମ୍ଳାନ ବସ୍ତ୍ର ପାଇଲେ ।

ରାମଚନ୍ଦ୍ରଙ୍କ ମନୋରମ ସୌନ୍ଦର୍ଯ୍ୟ ଦେଖି ଆକୃଷ୍ଟ ହୋଇ ରାବଣ-ଭଗ୍ନୀ ସୂର୍ପଣଖା ତାଙ୍କୁ ବିବାହ କରିବାକୁ ମନ ବଳାଇଲା । ସେ ଏକ ସୁନ୍ଦରୀ ନାରୀ ରୂପ ଧାରଣ କରି ରାମଚନ୍ଦ୍ରଙ୍କ ଆଗରେ ଉପସ୍ଥିତ ହେଲା ଓ ନିଜର ମନୋଭାବ ପ୍ରକାଶ କଲା । କିନ୍ତୁ ରାମଚନ୍ଦ୍ର ସୂର୍ପଣଖାର ମାୟା ଜାଣି ପାରିଲେ ଓ ଦ୍ୱିତୀୟ ବିବାହ କରି ପାରିବେ ନାହିଁ ବୋଲି ଜଣାଇ ଦେଲେ । ସୂର୍ପଣଖା ଅନେକ ଅନୁନୟ ବିନୟ ହେବାରୁ ଲକ୍ଷ୍ମଣଙ୍କ ନିକଟକୁ ଏକ ଶ୍ଳେଷଯୁକ୍ତ ପତ୍ର ଦେଇ ତାକୁ ଲକ୍ଷ୍ମଣଙ୍କ ନିକଟକୁ ପଠାଇ ଦେଲେ । ପତ୍ର ପାଠ ପରେ ସମସ୍ତ ବିଷୟ ଜାଣିପାରି ଲକ୍ଷ୍ମଣ ରାବଣ-ଭଗ୍ନୀ ସୂର୍ପଣଖାର ନାସାକର୍ଣ୍ଣ ଛେଦନ କଲେ । ସୂର୍ପଣଖା ଏହା ଦେଖି ଦୁଇଭାଇଙ୍କ ଉପରେ ରାଗିଗଲା ଓ ପ୍ରତିଶୋଧ ନେବ ବୋଲି ଧମକ ଦେଇ, କାନ୍ଦି କାନ୍ଦି ନିଜ ଭାଇମାନଙ୍କ ପାଖକୁ ଫେରିଯାଇ ତା'ର ଦୁଃଖ ଦୁର୍ଦ୍ଦଶା କଥା ଜଣାଇଲା । ଏହା ଶୁଣି ଖର, ଦୂଷଣ, ତ୍ରିଶିରା ପ୍ରଭୃତି ରାକ୍ଷସଗଣ ରୁଷ୍ଟ ହେଲେ ଓ ଶ୍ରୀରାମ-ନିପାତ ନିମନ୍ତେ

ପ୍ରତିଜ୍ଞା କରି ଯୁଦ୍ଧ କରିବାକୁ ବାହାରି ପଡ଼ିଲେ । ଏହି ସମସ୍ତ ରାକ୍ଷସ ଶ୍ରୀରାମଙ୍କ ସଙ୍ଗରେ ଯୁଦ୍ଧ କରୁ କରୁ ମୃତ୍ୟୁ ମୁଖରେ ପଡ଼ିଲେ ।

ସୂର୍ପଣଖା ରାବଣ ଆଗରେ ରାମ-ପତ୍ନୀ ସୀତାଙ୍କର ଅପୂର୍ବ ରୂପ ଲାବଣ୍ୟ ବର୍ଣ୍ଣନା କରିବାରୁ, ରାବଣ ସୀତାଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ନିଜର ରାଣୀ କରିବାକୁ ଚାହିଁଲା । ତେଣୁ ମାରୀଚକୁ ଡାକି ସୀତାଙ୍କୁ ପ୍ରଲୋଭିତ କରିବାକୁ ଆଦେଶ ଦେଲା । ମାରୀଚ ସ୍ୱର୍ଣ୍ଣ ମୃଗ ରୂପ ଧାରଣ କରି ପଞ୍ଚବଟୀରେ ପ୍ରବେଶ ହେଲା । ସୀତା ତାକୁ ପାଇବା ପାଇଁ ଆଗ୍ରହ ପ୍ରକାଶ କଲେ ଓ ରାମଚନ୍ଦ୍ର ତଥା ଲକ୍ଷ୍ମଣଙ୍କୁ ତାଙ୍କର ପଞ୍ଚବଟୀ କୁଟୀରରୁ ପଠାଇ ଦେଲେ । ସୀତା ପଞ୍ଚବଟୀ କୁଟୀରରେ ଏକାକୀ ଥିଲାବେଳେ ରାକ୍ଷସ ରାବଣ ଭଣ୍ଡ ତପସ୍ୱୀ ବେଶରେ କୁଟୀର ଆଗରେ ପ୍ରବେଶ କଲା ଓ ଭିକ୍ଷା ନିବେଦନ କଲା । ସୀତା ଉକ୍ତ ଭଣ୍ଡ ତପସ୍ୱୀକୁ ଭିକ୍ଷା ଦେଲାବେଳେ, ମାୟାବୀ ରାବଣ ବଳପୂର୍ବକ ତାଙ୍କୁ ଅପହରଣ କରିନେଲା ।

ରାମଚନ୍ଦ୍ର ପଞ୍ଚବଟୀ କୁଟୀରକୁ ଫେରି ଦେଖିଲେ, ସୀତା ନାହାନ୍ତି । ସେ ଦୁଃଖରେ ବିହ୍ୱଳ ହୋଇ ପଡ଼ିଲେ । ତା'ପରେ ରାମଚନ୍ଦ୍ର ଓ ଲକ୍ଷ୍ମଣ ସୀତାଙ୍କ ଅନ୍ୱେଷଣରେ ବାହାରି ପଡ଼ିଲେ ।

ପଥ ମଧ୍ୟରେ ରାମଭକ୍ତ-ଜଟାୟୁ ପକ୍ଷୀ ରାବଣ କର୍ତ୍ତୃକ ସୀତା ହରଣର ଦାରୁଣ ସମ୍ବାଦ ଜଣାଇଲା ।

ଏହାପରେ ପାପାଚାରୀ ରାବଣ କବଳରୁ ସୀତାଙ୍କୁ ଉଦ୍ଧାର କରିବା ନିମନ୍ତେ ରାମଚନ୍ଦ୍ର ପ୍ରତିଜ୍ଞା କଲେ । ସେ କିଷ୍କିନ୍ଧାର ସୁଗ୍ରୀବ ସଙ୍ଗରେ ମିତ୍ରତା ସ୍ଥାପନ କରି, ତାଙ୍କର ବାନର ସୈନ୍ୟମାନଙ୍କ

ସାହାଯ୍ୟ ଲାଭ କଲେ । ନଳ ଓ ବାନରମାନଙ୍କ ସାହାଯ୍ୟରେ ସେତୁବନ୍ଧ ବାନ୍ଧି ରାବଣର ଲଙ୍କା ରାଜ୍ୟକୁ ଗମନ କଲେ ।

ଲଙ୍କାରେ ରାମଙ୍କ ସଙ୍ଗରେ ରାବଣ ପକ୍ଷର ଘମାଘୋଟ ଯୁଦ୍ଧ ହେଲା । ଯୁଦ୍ଧରେ ରାବଣର ପୁତ୍ର ଇନ୍ଦ୍ରଜିତ ରାମ ଲକ୍ଷ୍ମଣଙ୍କୁ ନାଗଫାଶ ବନ୍ଧନରେ ପକାଇ ଦେଲା । ଏହା ଦେଖି ରାମଚନ୍ଦ୍ର ଗରୁଡ଼ଙ୍କୁ ସ୍ମରଣ କରିବା ମାତ୍ରେ, ସର୍ପମାନେ ଭୟରେ ପଳାୟନ କଲେ । ଗରୁଡ଼ ରାମ ଲକ୍ଷ୍ମଣଙ୍କୁ ନାଗଫାଶରୁ ମୁକ୍ତ କଲା ।

ରାବଣର ଭାଇ କୁମ୍ଭକର୍ଣ୍ଣ ଲକ୍ଷ୍ମଣଙ୍କ ଦ୍ୱାରା ନିହତ ହେଲା । ଏହାପରେ ଲକ୍ଷ୍ମଣ ପରାକ୍ରମୀ ଇନ୍ଦ୍ରଜିତକୁ ବଧ ନିପାତ କଲେ ।

ପୁତ୍ର ଇନ୍ଦ୍ରଜିତର ନିଧନ ଦେଖି ରାବଣ ଅତିଶୟ ଦୁଃଖିତ ହେଲା ଓ ପ୍ରତିଶୋଧ ନେବା ନିମନ୍ତେ ଲକ୍ଷ୍ମଣଙ୍କ ପ୍ରତି ବ୍ରହ୍ମାସ୍ତ୍ର ପ୍ରୟୋଗ କଲା । ବୈଦ୍ୟ ସୁଷେଣଙ୍କ ଆଦେଶରେ ହନୁମାନ ବିଶଲ୍ୟକରଣୀ ସଂଗ୍ରହ କରିବା ପାଇଁ ଗନ୍ଧମାର୍ଦ୍ଦନ ପର୍ବତକୁ ଗଲା । କିନ୍ତୁ ବିଶଲ୍ୟକରଣୀ ମହୌଷଧି ଚିହ୍ନି ନ ପାରି ଗନ୍ଧମାର୍ଦ୍ଦନ ପର୍ବତର ଶୃଙ୍ଗକୁ ଆକାଶ ମାର୍ଗରେ ବୋହି ଆଣିଲା । ସୁଷେଣ ଉକ୍ତ ଶୃଙ୍ଗରୁ ବିଶଲ୍ୟକରଣୀ ଆଣି ଜାମ୍ବୁବାନକୁ ଦେଇ କହିଲେ, ଏକପତ୍ନୀ ହସ୍ତରେ ଏହାକୁ ବଟାଇ ଆଣ । ଜାମ୍ବୁବାନ ତାହା ବିଭୀଷଣର ଭଉଣୀ ଏକପତ୍ନୀ ହସ୍ତରେ ଦେଇ ବାଟିବାକୁ କହିଲେ । ଏକପତ୍ନୀ ବିଶଲ୍ୟକରଣୀକୁ ସ୍ୱର୍ଗର ପଞ୍ଚରତ୍ନ ଖ୍ରବ ଶିଳାରେ ବାଟିଲା । ସେହି ମହୌଷଧି ଶିଳାରେ ବଟା ହେବା ପରେ ଲକ୍ଷ୍ମଣଙ୍କ କ୍ଷତ ସ୍ଥାନରେ ଲେପନ କରାଗଲା ଓ ମୃତ୍ୟୁ ସଂଜୀବନୀ ମନ୍ତ୍ର ପ୍ରୟୋଗ କରାଗଲା । ଏହାପରେ ସଂଜ୍ଞାହୀନ ଲକ୍ଷ୍ମଣ ପୁନର୍ଜୀବନ ଲାଭ କଲେ ।

ରାବଣର ଦଳବଳ ସଙ୍ଗେ ରାମଚନ୍ଦ୍ରଙ୍କ ଯୁଦ୍ଧ ଚାଲି ରହିଲା । ରାବଣ ପକ୍ଷର ଆତ୍ମୀୟ ଅନେକ ଯୋଦ୍ଧା ଗୋଟି ଗୋଟି ଯୁଦ୍ଧ ଭୂମିରେ ଢଳି ପଡ଼ିଲେ । ଭ୍ରାତା, ପୁତ୍ର ଓ ଆତ୍ମୀୟମାନଙ୍କୁ ହରାଇ ରାବଣ ନିଃସଙ୍ଗ, ନିଃସହାୟ ପାଲଟି ଗଲା । ସୁନା ଲଙ୍କା ଚୂନା ହେଲା ।

ଅବଶେଷରେ ରାମଚନ୍ଦ୍ର ସ୍ୱୟଂ ବ୍ରହ୍ମ ଅସ୍ତ୍ର ପ୍ରୟୋଗ କରି ରାବଣକୁ ବଧ କଲେ ।

ଯୁଦ୍ଧର ପରିସମାପ୍ତି ଘଟିଲା । ଏହିପରି ଭାବରେ ଦୁଷ୍ଟ ଅସୁରକୁଳ ନିପାତ ହେଲେ । ବିଭୀଷଣଙ୍କୁ ଲଙ୍କାରେ ଅଭିଷେକ କରାଇ ରାମଚନ୍ଦ୍ର ସୀତା ଓ ଲକ୍ଷ୍ମଣଙ୍କ ସଙ୍ଗରେ ଅଯୋଧ୍ୟାକୁ ବାହୁଡ଼ି ଆସିଲେ । ବନବାସ କାଳ ଅତିବାହିତ ହୋଇ ସାରିଥିଲା । ରାମଚନ୍ଦ୍ର ଅଯୋଧ୍ୟାର ରାଜ ସିଂହାସନରେ ଅଭିଷିକ୍ତ ହେଲେ ।

× × × ×

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ 'ବ' ଅନୁପ୍ରାସରେ ବୈଦେହୀଶ ବିଳାସ ରଚନା କରିଅଛନ୍ତି । ପ୍ରତ୍ୟେକ ଛାନ୍ଦ 'ବ' ଅକ୍ଷରରେ ଆରମ୍ଭ, ପ୍ରତ୍ୟେକ ଛାନ୍ଦ ଯେତେ ପଦରେ ଶେଷ ସେ ସଂଖ୍ୟା 'ବ' ଅକ୍ଷରରେ ଯୁକ୍ତ ଓ ପୁସ୍ତକର ନାମରେ ମଧ୍ୟ ଆଦ୍ୟ ଓ ପ୍ରାନ୍ତ ପଦରେ 'ବ' ଅକ୍ଷର ରହିଛି । କଥିତ ଅଛି, ଉପେନ୍ଦ୍ର ଭଞ୍ଜ ଏହାକୁ ବରଷକରେ ଶେଷ କରିଥିଲେ ।

ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସ ରଚନା ସଂପର୍କରେ ଏକ ଜନଶ୍ରୁତି ରହିଛି । ତାହା ହେଲା, ଉପେନ୍ଦ୍ରଙ୍କ ଉପରେ ତାଙ୍କର ପିତାମହ ଧନଞ୍ଜୟ ଭଞ୍ଜଙ୍କ ପ୍ରଭାବ ପଡ଼ିଥିଲା । ରାଜା ଧନଞ୍ଜୟ ଜଣେ ସୁକବି ଥିଲେ ଓ ବହୁ କାବ୍ୟ କବିତାର ସ୍ରଷ୍ଟା

ଥିଲେ । ଏବେ ଧନଞ୍ଜୟ ଭଞ୍ଜଙ୍କର 'ରଘୁନାଥ ବିଳାସ' ଗ୍ରନ୍ଥକୁ ନେଇ ଧନଞ୍ଜୟ ଓ ଉପେନ୍ଦ୍ରଙ୍କ ମଧ୍ୟରେ ଆଲୋଚନା ଚାଲିଲା । ଉପେନ୍ଦ୍ର ଭଞ୍ଜ ପ୍ରକାଶ କଲେ, ମୁଁ ତୁମଙ୍କ 'ରଘୁନାଥ ବିଳାସ' ଅନୁକରଣରେ 'ବ' ଅକ୍ଷରରେ 'ବୈଦେହୀଶ ବିଳାସ' ଗ୍ରନ୍ଥ ଲେଖି ଶ୍ରୀ ତୁମଙ୍କ କର କମଳରେ ଅର୍ପଣ କରିବି ।

କବି ଧନଞ୍ଜୟ ପୌତ୍ର ଉପେନ୍ଦ୍ରଙ୍କ ଏହି ଉକ୍ତିରେ ଚପଳତା ଉପଲବ୍ଧି କରି ସହାସ୍ୟ ବଦନରେ ପ୍ରଶ୍ନ କଲେ, ପାରିବ ତ ?

ଉପେନ୍ଦ୍ର ନିଃସଙ୍କୋଚ ଭାବରେ ଉତ୍ତର ଦେଲେ, ଆଜ୍ଞା, ପାରିବ । ଧନଞ୍ଜୟ ପ୍ରଶ୍ନ କଲେ, କେତେ ବର୍ଷରେ ?

ପ୍ରତ୍ୟୁତ୍ପନ୍ନମତି ଉପେନ୍ଦ୍ର ସହସା ଉତ୍ତର ଦେଲେ, ବରଷକରେ ।

ଉପେନ୍ଦ୍ର ଭଞ୍ଜ ସତକୁ ସତ ବରଷକରେ ଆମୂଳଚୂଳ 'ବ' ଅକ୍ଷରରେ 'ବୈଦେହୀଶ ବିଳାସ' ରଚନା କରି ଧନଞ୍ଜୟ ଭଞ୍ଜଙ୍କ କର କମଳରେ ଅର୍ପଣ କରି ଆପଣାର ପ୍ରତିଶ୍ରୁତି ରକ୍ଷା କରିଥିଲେ ।

'ବୈଦେହୀଶ ବିଳାସ' ପାଠ କରି ରାଜା ଧନଞ୍ଜୟ ଉପେନ୍ଦ୍ରଙ୍କ ଉପରେ ପ୍ରସନ୍ନ ହେଲେ ଓ ଅଶ୍ରୁ ଗଦ୍ ଗଦ୍ କଣ୍ଠରେ ଆଶୀର୍ବାଦ ଦେଇଥିଲେ ।

ଉପେନ୍ଦ୍ର ତାଙ୍କ ନିଜ ଭାଷାରେ 'ବୈଦେହୀଶ ବିଳାସ'ର ୫୨ ଛାନ୍ଦରେ ପ୍ରକାଶ କରିଛନ୍ତି—

"ବୈଦେହୀଶ ବିଳାସ ଏ ଗୀତ ମନୋରମ ।
ବାନଛାନ୍ଦେ ଶେଷ ଆଦ୍ୟ ବକାର ନିୟମ ଯେ ॥

ବାଲ୍ମୀକି ସଦନେ ଯାଇ ଜାନକୀ ରହିବା ।
ବଧ ଲବଣରେ କୁଶ-ଲବ ଜନ୍ମ ହେବା ଯେ ॥

ବାଇଚିବା ଯାଗ ରାମସୁତ ଗୀତଗାନ ।
ବୈଦେହୀଶ ଆଣିମା ପୁଣି ପାତାଳେ ଗମନ ଯେ ॥"

'ବ' ଅନୁପ୍ରାସରେ ଏ କାବ୍ୟ ରଚିତ । 'ବ' ନିୟମ ଅନୁସାରେ ବାନ (ବାଉନ) ଛାନ୍ଦରେ କାବ୍ୟର ପଦ ସମାପ୍ତି ଘଟିଛି । ପ୍ରତ୍ୟେକ ଛାନ୍ଦର ପଦ ସଂଖ୍ୟା 'ବ'ତିଶ, ବୟାଳିଶ, ବାନ, ବାଷଠି, ବୟାଅଶୀ ଇତ୍ୟାଦି 'ବ' ଆଦ୍ୟବର୍ଣ୍ଣ ସଂଖ୍ୟା ରଖାଯାଇଛି ।



# ରସିକ ହାରାବଳୀ

ରସିକ ହାରାବଳୀର ପ୍ରଥମ ଛାନ୍ଦରେ (୪ରୁ ୬ପଦ) କବି ତାଙ୍କର କାବ୍ୟ ସଂପର୍କରେ ଲେଖିଛନ୍ତି ।

"ବିରଚିଲି କରିବ ଉତ୍ତମ ଛାନ୍ଦ ଗୀତ ।
ରସସାର ଶୃଙ୍ଗାର ଚକ୍ଷିରେ ହେବ ବ୍ୟକ୍ତ ॥
ଅନୁଭବରୁ ପ୍ରଖ୍ୟାତ ମାନସ ରଚନା ।
ଶୁଣ ସୁରସିକମାନେ ହୋଇଣ ସୁମନା ॥"

ପୁଣି ଏ କାବ୍ୟର ୧୮୦ାରୁ ୨° ପଦରେ ଲେଖିଛନ୍ତି—

"ହର ଏ କରୁଣା ବିଜ୍ଞ ହସ୍ତଗତ ଏ ପୁସ୍ତକ ମୋର ହୋଇବ ।
ଅଜ୍ଞ ସମୂହର କର୍ଣ୍ଣକୁହରକୁ କେବେହେଁ ପ୍ରବେଶ ନୋହିବ ।
ଆଖି ଅନଳ । ହାରରେ ନ ଲଭୁ ବିନାଶ ।
ଉତ୍ତମ ଜନରେ ଦୂଷିତ ନୋହିଣ ପ୍ରକାଶ ହେଉ ସର୍ବଦେଶ ।

ଉପେନ୍ଦ୍ର ଭଞ୍ଜ ବୀରବର ବିରଚିତ ଅଷ୍ଟ ଚୋଷ ଚଉଁରେ
'ରସିକ ହାରାବଳୀ' ନାମ ରଚିତ ବୋଲିବାର ଏହୁ ଗୀତରେ ।
ପଦ ସଂଖ୍ୟାରେ । ତିନଶ ପଞ୍ଚଷଠି ଜାଣ ।
ରୂପକ ଯମକ ଆଶ୍ରୟ ବିରୋଧ ଶ୍ଳେଷଛଳେ ଗୀତ ନିପୁଣ ॥"

ଭଞ୍ଜ କବିଙ୍କର କାଳ୍ପନିକ କାବ୍ୟ 'ରସିକ ହାରାବଳୀ' ତାଙ୍କ ଜୀବନର ଆଦ୍ୟ ସ୍ଫୁରଣ ବୋଲି କୁହା ଯାଇଥାଏ । ଶୃଙ୍ଗାର ରସ ସ୍ନିଗ୍ଧ ରସିକ ହାରାବଳୀରେ କବି ଜୀବନର ପ୍ରତ୍ୟକ୍ଷ ଅନୁଭୂତିମାନ ଲିପିବଦ୍ଧ ହୋଇଛି ।

ଉପେନ୍ଦ୍ର ଭଞ୍ଜ ବାଣପୁର ରାଜକନ୍ୟା ସୁନ୍ଦରୀ ଲାବଣ୍ୟବତୀଙ୍କୁ ବିବାହ କରିଥିଲେ । ବିବାହର କିଛିକାଳ ପରେ ବିଦୁଷୀ ଲାବଣ୍ୟବତୀଙ୍କ ମୃତ୍ୟୁ ଘଟିଥିଲା । ଏ ବିଚ୍ଛେଦ କବିଙ୍କ ଜୀବନରେ ଦାରୁଣ ଧକ୍କା ଦେଇଥିଲା । ପତ୍ନୀ ବିରହ ଜନିତ ଯନ୍ତ୍ରଣାରେ ସେ ଅଶେଷ ଦୁଃଖ ଲାଭ କଲେ । ସ୍ୱୀୟ ବିରହାନୁଭୂତିକୁ ଲିପିବଦ୍ଧ କରିବା ପାଇଁ ସେ ରସିକ ହାରାବଳୀ, ଲାବଣ୍ୟବତୀ, ପ୍ରେମ ସୁଧାନିଧି ପ୍ରଭୃତି କାଳ୍ପନିକ କାବ୍ୟମାନ ରଚନା କରିଥିଲେ ।

ବ୍ୟକ୍ତି କୈନ୍ଦ୍ରିକ ଚିନ୍ତା ଓ ଚେତନାକୁ କାବ୍ୟ ମାଧ୍ୟମରେ ପ୍ରକାଶ କରିବା କବିଙ୍କର ପରମ ଲକ୍ଷ୍ୟରେ ପରିଣତ ହୋଇଥିଲା । ତେଣୁ ନାୟକ ନାୟିକା ମାଧ୍ୟମରେ ସେ ନିଜର ପ୍ରତ୍ୟକ୍ଷ ଅନୁଭୂତିମାନଙ୍କୁ ଅପୂର୍ବ ରୂପ ଦେଇ ପ୍ରକାଶ କରିବାରେ ସକ୍ଷମ ହୋଇଥିଲେ ।

ଭଞ୍ଜ କବି ଅନାବିଳ ଦାମ୍ପତ୍ୟ ପ୍ରେମ ବା ସ୍ୱୀକାୟା ପ୍ରେମର ପୂଜାରୀ ଥିଲେ । ଏହା ଆଦର୍ଶ ପତ୍ନୀ ପ୍ରେମ ବା ସ୍ୱାମୀ ସ୍ତ୍ରୀର ପ୍ରେମକୁ ବୁଝାଇଥାଏ । ଭଞ୍ଜ ସାହିତ୍ୟର ନାୟକ ନାୟିକା ଏ ପ୍ରକାର ପ୍ରେମର ପୃଷ୍ଠପୋଷକତା କରିଥାନ୍ତି । ଅଧିକନ୍ତୁ ସେମାନଙ୍କ ପ୍ରେମ କେବଳ ଗୋଟିଏ ଜୀବନକାଳ ପାଇଁ ଆବଦ୍ଧ ନ ହୋଇ ଜନ୍ମ ଜନ୍ମାନ୍ତରକୁ ବ୍ୟାପି ରହେ ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଏ ପ୍ରକାର ସ୍ୱୀକାୟା ପ୍ରେମ ବର୍ଣ୍ଣନାରେ ସିଦ୍ଧ ହସ୍ତ ହେଲେ । ଏହି ପ୍ରେମର ଜୟଗାନ କରି ସେ ରସିକ ହାରାବଳୀର ଚତୁର୍ଥ ଛାନ୍ଦ (୧୯ଠାରୁ ୨୩ ପଦ)ରେ

ଉଲ୍ଲେଖ କରିଛନ୍ତି—

"ହେଲେ ହୋଇବ ପଦନ୍ତ ଶିରଚ୍ଛେଦ,
କେବେ ନୋହିବ ପ୍ରୀତିର ବିଚ୍ଛେଦ ।
ଯୁବାକାଳ ରଜା ସର୍ବ ଉପରେ,
ମନ ରଜା ଯୁବାକାଳ ଉପରେ ।
ମନ ଉପରେ ତ ରଜା ପୀରତି,
କେହ୍ନେ ପାରିବ ମନୁଷ୍ୟ ବରତି ।
ନବ ଅନୁରାଗ ଦିନେ ଦିନେକ
ସୁଖ ଜାତ ହୋଇଥାଏ ଅନେକ ।
ପ୍ରୀତି ହୋଇ ଯେବେ ଏଡ଼େ ମଧୁର,
କ୍ଷୁଧା ତୃଷା ନିଦ୍ରା ହେବ ବିଧୁର ।
ପୁଣି ଦଇବେ ନୋହଇଲେ ଦମ୍ପତି,
ପଦ ତଳେ ମିଳେ ଇନ୍ଦ୍ର ସଂପତ୍ତି ।
ପଶୁମାନେ ହେଲେ ବଶ ଏ ରସେ,
ଯେହ୍ନେ ପାଷାଣ ସେ ଏଥି ମଧ ରସେ ।
ପ୍ରୀତି ଯୋଗେ ପାଷାଣ ନ ଦ୍ରବଇ,
ବଧୂ ବଧୂମଣି ଠରୁ ଭାବଇ ।
କେହ୍ନୁ ପୀରତିରେ ବଶ ନୋହିଲା,
କ ବୋଲି ରସେ ମନକୁ ନଇଲା ।" ଇତ୍ୟାଦି ।

ରସିକ ହାରାବଳୀର କାହାଣୀ ହେଲା, ମଳୟ ପର୍ବତରେ ଶାପଗ୍ରସ୍ତ ବିଦ୍ୟାଧର ପୁନର୍ଜନ୍ମ ଲଭ କରି ପୁରୁଷୋତ୍ତମ କ୍ଷେତ୍ରରେ ବସବାସ କଲା । କମଳାଙ୍କ ଆଶୀର୍ବାଦରୁ ତାହାର ପତ୍ନୀ ଗର୍ଭରୁ ଅପରୂପ କନ୍ୟା ଜାତ ହେଲା । ତା'ର ନାମ ହେଲା ରସିକ ହାରାବଳୀ ।

ରସିକ ହାରାବଳୀ ସ୍ୱଗୃହରେ ସ୍ନେହ ଆଦର ଲାଭ କରି ବଢ଼ିବାକୁ ଲାଗିଲା । ବାଲ୍ୟ ଓ ପୌଗଣ୍ଡ ଅବସ୍ଥା ଅତିକ୍ରମ କରି ସେ ଯୌବନରେ ପଦାର୍ପଣ କଲା । ସୁନ୍ଦରୀ ରସିକ ହାରାବଳୀର ରୂପ ଯୌବନର ପଟାନ୍ତର ନ ଥିଲା । ଫଳେ ତା' ଖ୍ୟାତି ଦେଶ ବିଦେଶରେ ବ୍ୟାପି ଗଲା ।

ସକଳ ଗୁଣ ସଂପନ୍ନା ସୁନ୍ଦରୀ ରସିକ ହାରାବଳୀର ପ୍ରଶଂସା ଶୁଣି କୋଶଳ ରାଜପୁତ୍ର ତା' ପ୍ରତି ଆକୃଷ୍ଟ ହେଲେ ଓ ତାକୁ ପତ୍ନୀ ରୂପେ ଲାଭ କରିବାକୁ ଇଚ୍ଛା ପୋଷଣ କଲେ ।

ପୁରୁଷୋତ୍ତମ କ୍ଷେତ୍ରରୁ ଆସିଥିବା ଜଣେ ବ୍ରାହ୍ମଣ ଅପୂର୍ବ କନ୍ୟା ରସିକ ହାରାବଳୀର ସମସ୍ତ କଥା କୋଶଳ ରାଜପୁତ୍ରଙ୍କ ଆଗରେ ପ୍ରକାଶ କରିଥିଲା । ତେଣୁ ସେ ସୈନ୍ୟ ସାମନ୍ତ ସହ ଚନ୍ଦନ ଯାତ୍ରା ଦର୍ଶନ କରିବା ନିମନ୍ତେ ପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା କଲେ ।

ସର୍ବଧର୍ମ ସମନ୍ୱୟପୀଠ ନୀଳାଚଳ ଧାମରେ ପହଞ୍ଚି କୋଶଳ ରାଜପୁତ୍ର ଚନ୍ଦନ ଉତ୍ସବ ଦର୍ଶନ କଲେ । ଚନ୍ଦନ ଉତ୍ସବରୁ ପ୍ରତ୍ୟାବର୍ତ୍ତନ ସମୟରେ ସୁନ୍ଦରୀ ରସିକ ହାରାବଳୀ ସଙ୍ଗେ ସାକ୍ଷାତ ହେଲା । ଚାରିଚକ୍ଷୁ ମିଳନରେ ଉଭୟେ ରୋମାଞ୍ଚିତ ହୋଇ ଉଠିଲେ ଓ ଉଭୟଙ୍କ ହୃଦୟରେ ଆସକ୍ତି ଓ ଅନୁରାଗ ଦେଖାଦେଲା । ମିଳନ ଉଦ୍ଦେଶ୍ୟରେ ସେମାନେ ଆତୁରତା ପ୍ରକାଶ କଲେ ।

ଏହାପରେ ରସିକ ହାରାବଳୀ ସଙ୍ଗରେ କୋଶଳ ରାଜପୁତ୍ରଙ୍କର ବିବାହ ପ୍ରସ୍ତାବ ପଡ଼ିଲା । ପୁରୋହିତଙ୍କ ଦ୍ୱାରା ଏ ପ୍ରସ୍ତାବ ଗୃହୀତ ଓ ସଂପାଦିତ ହେବାରୁ ନାୟକ ନାୟିକା ପରମ ଆନନ୍ଦ ଅନୁଭବ କଲେ ।

ବର କନ୍ୟା ବେଦି ଉପରକୁ ଯିବା ପୂର୍ବରୁ ନାୟିକାର କନିଷ୍ଠା ଭଗ୍ନୀ ଭଣୋଇକୁ ଦେଖି ଭାବୁଛି ।

"କନ୍ୟା ସାନ ଭଉଣୀ କୁମାର ଶୋଭା ଚାହିଁ
ବିସ୍ମରନ୍ତି ଆମ୍ଭର ଏମନ୍ତ କର୍ମ ନାହିଁ ।
ଏ ପୁରୁଷ ହୋଇ ଆଆନ୍ତା ଯେବେ ଆମ୍ଭ ବର,
ଦିବାନଶି ହୋଇବାକୁ ନୁହନ୍ତା ଗୋଚର ।
ଧାତାପରିବାଶି ଜନ୍ମ ହେଲେ ହୋଇଥାନ୍ତା,
ସେବା ବେଳେ କର ପଦ୍ମ ଅଙ୍ଗରେ ଲାଗନ୍ତା ।"

ଏହିପରି ଏକ ସୁନ୍ଦର ସୁପୁରୁଷକୁ ପତିରୂପେ ଲାଭ କରି ସୁରସିକା ରସିକ ହାରାବଳୀ ମନ ମଧ୍ୟରେ ଅଶେଷ ଆନନ୍ଦ ଲାଭ କରିବା ସ୍ୱାଭାବିକ । ସେହିପରି, ରସିକ ହାରାବଳୀ ପରି ଏକ ଅପୂର୍ବ ଯୁବତୀର ସାନ୍ନିଧ୍ୟ ଲାଭ କରି କୋଶଳ ରାଜପୁତ୍ର ଆନନ୍ଦରେ ବିହ୍ୱଳ ହୋଇ ଉଠିଛନ୍ତି ।

ବିବାହ ପରେ ନବ ଦମ୍ପତିଙ୍କର ମଧୁଶଯ୍ୟା କ୍ରିୟା ସଂପାଦିତ ହୋଇଛି, ଏତେ ଦିନର ସ୍ୱପ୍ନ, କଳ୍ପନା ସାର୍ଥକତା ଲାଭ କରିଛି । ସେମାନେ ପରସ୍ପର ସୁଖକୁ ଯୁଗ ଯୁଗର ତୃଷ୍ଣା ନେଇ ଅନେଇ ରହିଛନ୍ତି । ମଧୁର ଆଳାପ ଆଲୋଚନାରେ ଅତିବାହିତ ରାତିର ଆୟୁଷ ଜଣା ପଡ଼ୁନାହିଁ । ପ୍ରତି ଲୋମ କୂପରେ ସେମାନଙ୍କର କଦମ୍ବ ଫୁଟିଛି ।

କିଛି ସମୟ ପରେ କୋଶଳ ରାଜପୁତ୍ରଙ୍କୁ ଇଳାବୃତ୍ତ ଖଣ୍ଡକୁ ଯିବାକୁ ପଡ଼ୁଛି । କାରଣ, ସେଠାରେ ଅସୁରମାନଙ୍କ ଉତ୍ପାତ

ଦେଖାଦେଇଛନ୍ତି, ସେମାନେ ରାଜ୍ୟର ଶାନ୍ତିଶୃଙ୍ଖଳା ବ୍ୟାହତ କରୁଛନ୍ତି, ସେମାନଙ୍କୁ ଦମନ କରିବା ଏକାନ୍ତ ଆବଶ୍ୟକ ହୋଇ ପଡ଼ିଛି ।

ନାୟକ ରାଜପୁତ୍ର ଇଳାବୃତ୍ତ ଖଣ୍ଡରେ ସୁଦୀର୍ଘ ଏକବର୍ଷ କାଳ ଅବସ୍ଥାନ କରି ଅସୁରମାନଙ୍କୁ ଆୟତ୍ତକୁ ଆଣିଛନ୍ତି । ଏହି ଏକ ବର୍ଷର ଛଅଟି ଋତୁରେ ନାୟକ ଓ ନାୟିକା ଉଭୟେ ବିଭିନ୍ନ ପ୍ରକାର ବିରହଜ୍ୱାଳା ଭୋଗ କରିଅଛନ୍ତି ।

ଏହାପରେ କୋଶଳ ରାଜପୁତ୍ର ତାଙ୍କର ପ୍ରେମିକା ବଧୂ ନିକଟକୁ ଫେରି ଆସିଛନ୍ତି । ସେମାନଙ୍କ ପୁନର୍ମିଳନ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ହୋଇଛି ।



# ପ୍ରେମ ସୁଧାନିଧି

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଯେଉଁ ସମସ୍ତ କାଳ୍ପନିକ କାବ୍ୟ ରଚନା କରିଅଛନ୍ତି, ତନ୍ମଧ୍ୟରୁ 'ପ୍ରେମ ସୁଧାନିଧି' କାବ୍ୟ ଓଡ଼ିଆ ସାହିତ୍ୟରେ ଏକ ଅମୂଲ୍ୟ ଗ୍ରନ୍ଥ ରୂପେ ପରିଚିତ । ଆଲୋଚକମାନଙ୍କ ମତରେ ଏ ଗ୍ରନ୍ଥ ପ୍ରେମ ରୂପକ ସୁଧା ବା ଅମୃତର ନିଧି ବା ସମୁଦ୍ର ସ୍ୱରୂପ ।

କାବ୍ୟର ମଙ୍ଗଳାଚରଣରେ କବି ଉପାସ୍ୟ ଦେବତା ରାମଚନ୍ଦ୍ରଙ୍କୁ ସ୍ତୁତି କରିବା ପରେ ବିଷୟବସ୍ତୁ ସଂପର୍କରେ ସୂଚନା ଦେଇ ଉଲ୍ଲେଖ କରିଅଛନ୍ତି ।

"ଉଜ୍ଜ୍ୱଳ ଉଜ୍ଜ୍ୱଳ ରସେ ଗୀତ ହୋଇବ ।
ମାନସ ମାନସ ହଂସ ପ୍ରାୟେ କ୍ରୀଡ଼ିବ ॥

(ପ୍ରଥମ ଛାନ୍ଦ- ପଞ୍ଚମ ପଦ)

ପୁଣି ପ୍ରେମ ସୁଧାନିଧି କାବ୍ୟର ଷୋଡ଼ଶ ଛାନ୍ଦରେ ଉଲ୍ଲେଖ କରିଛନ୍ତି —

"ସୁଖେ ବର୍ଣ୍ଣିଲେ ଦମୟନ୍ତି ପ୍ରବଳ ସଂପୂର୍ଣ୍ଣ ।
ଏହୁ ଗୀତ ଅକଳଙ୍କ ଚନ୍ଦ୍ରମା ସମାନ ॥
ଷୋଳ ଛାନ୍ଦ ଷୋଳକଳା ସଦା ପୂର୍ଣ୍ଣ ତହିଁ ।
ଅଷ୍ଟଗଣ୍ଡ ଦୂଷଣକୁ ଅବକାଶ ନାହିଁ ॥
ପ୍ରତି ଦିଶେ ପ୍ରତିଦିଶ ତହିଁ ପ୍ରକାଶିବ ।
ରସିକ-ହୃଦୟ-ରତ୍ନାକର ଉଲ୍ଲାସିବ ॥

ଖଳକୁଳ ଅନ୍ଧକାର ବେଗେ ହିଦ କରିବ ।
ପଣ୍ଡିତ-କୁମୁଦ ମୁଦ ବର୍ଦ୍ଧନ କରିବ ॥
ମନ ଚକୋରକୁ ତୋଷ କରିବ ସତତ ॥
ପୁଣି ଏହି ଗୀତ ନାରିକେଳ ଫଳବତ ॥
ବାହାରେ କର୍କଶ ଭିତରେ ତ ସରସତା ।
ଜାଣିଲା ଜନ କଣ୍ଠକୁ ହୋଇବ ମୁକୁତା ।” ଇତ୍ୟାଦି ।

କାବ୍ୟ ନାୟିକାର ନାମ ଅନୁସାରେ କବି ଉକ୍ତ କାବ୍ୟର ନାମ କରଣ କରିଅଛନ୍ତି । ସେ ପ୍ରତିପାଦନ କରିଅଛନ୍ତି ଯେ, ଏ କାବ୍ୟ ପ୍ରେମର ଏକ ଚନ୍ଦ୍ର ସ୍ୱରୂପ । ଅମାବାସ୍ୟା ଠାରୁ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ଚନ୍ଦ୍ର ଓ ତା'ର ସ୍ନିଗ୍ଧ ଶୀତଳ କିରଣ ଯେପରି କ୍ରମ ବର୍ଦ୍ଧମାନ ଅବସ୍ଥା ପ୍ରାପ୍ତ ହୁଏ, କାବ୍ୟର ନାୟକ-ନାୟିକାଙ୍କ ପ୍ରେମ ସେହିପରି କ୍ରମୋନ୍ନତି ଲଭ କରି ଶେଷରେ ପୂର୍ଣ୍ଣତା ପ୍ରାପ୍ତ ହୋଇଛି ।

ପୁନଶ୍ଚ, ପ୍ରେମ ବର୍ଣ୍ଣନାରେ ସିଦ୍ଧହସ୍ତ କବି ଭଞ୍ଜ ଏହି କାବ୍ୟରେ ତାଙ୍କର ପାଣ୍ଡିତ୍ୟ ଓ କବିତ୍ୱର କ୍ରମବିକଶିତ ପରିଣତି ପ୍ରଦର୍ଶନ କରିଅଛନ୍ତି ।

କାବ୍ୟ କାହାଣୀ ହେଲା, ଏକଦା କୋଶଳ ଦେଶର ରାଜା ନିଜ ପୁତ୍ର ପାଇଁ ଯୋଗ୍ୟ କନ୍ୟାଟିଏ ଖୋଜି ବିବାହ କରାଇଦେବା ପାଇଁ ଇଚ୍ଛା କଲେ । ପୁତ୍ର ଅନୁରୂପ କନ୍ୟା ପାତ୍ରୀଟିଏ ଖୋଜିବା ପାଇଁ, ପୁତ୍ରର ଚିତ୍ରପଟ ଦେଇ ପାତ୍ର ମନ୍ତ୍ରୀମାନଙ୍କୁ ସେ ବିଭିନ୍ନ ଦେଶକୁ ପଠାଇଲେ । ପାତ୍ର ମନ୍ତ୍ରୀମାନେ ଉତ୍କଳ, କୁନ୍ତଳ, ମଗଧ, ସିନ୍ଧୁ ପ୍ରଭୃତି ଦେଶକୁ ଗଲେ, କିନ୍ତୁ ରାଜକୁମାରଙ୍କ ପାଇଁ ଯୋଗ୍ୟ କନ୍ୟା ପାଇଲେ ନାହିଁ ।

ଅବଶେଷରେ ସେମାନେ କେରଳ ଦେଶରେ ଉପସ୍ଥିତ ହେଲେ । ସେତେବେଳେ କେରଳ ଦେଶର ରାଜା ଥାଆନ୍ତି ଜଗଜିତ, ତାଙ୍କର ପ୍ରେମ ସୁଧାନିଧି ନାମ୍ନୀ ଏକ ସୁନ୍ଦରୀ କନ୍ୟା ଥାଏ । କେରଳ ରାଜା ଜଗଜିତ ମଧ୍ୟ ନିଜ କନ୍ୟା ପାଇଁ ଯୋଗ୍ୟ ପାତ୍ର ସନ୍ଧାନରେ ଥାଆନ୍ତି । କିନ୍ତୁ ମନଲାଖି ପାତ୍ର ନ ପାଇ ସେ ବଡ଼ ଚିନ୍ତିତ ଥାନ୍ତି । କୋଶଳ ପାତ୍ର ମନ୍ତ୍ରୀଙ୍କ ହସ୍ତରେ ଥିବା କୋଶଳ ରାଜପୁତ୍ରଙ୍କ ଚିତ୍ରପଟ ଦେଖି ସେ ସନ୍ତୋଷ ପ୍ରକାଶ କଲେ । ଭାବିଲେ, ଏତେ ଦିନ ପରେ ନିଜ କନ୍ୟା ପାଇଁ ଉପଯୁକ୍ତ ପାତ୍ରଟିଏ ମିଳିଲା ।

ଏହାପରେ କେରଳ ରାଜା ଜଗଜିତ ନିଜ କନ୍ୟା ପ୍ରେମ ସୁଧାନିଧିର ଚିତ୍ରପଟକୁ ଦୂତ ହସ୍ତରେ କୋଶଳ ରାଜ୍ୟକୁ ପ୍ରେରଣ କଲେ । କେରଳ ଦୂତ କୋଶଳ ଯାଇ ରାଜକୁମାରୀ ପ୍ରେମ ସୁଧାନିଧିର ଚିତ୍ରପଟ ଦେଇ କୋଶଳ ରାଜାଙ୍କ ସମ୍ମତି ହାସଲ କଲା ।

ବିବାହ ପାଇଁ ବର ଓ କନ୍ୟା ପକ୍ଷ ରାଜ ଦେବ ଗୁରୁ ଜ୍ୟୋତିଷୀ ଗଣନା କରାଗଲା । ତହିଁରେ ବିବାହ ମେଳ ଜଣାପଡ଼ିବାରୁ ବିବାହ ଲଗ୍ନ ସ୍ଥିର କରାଗଲା । ଏହାପରେ କୋଶଳ ରାଜକୁମାର ଆଡ଼ମ୍ବର ସହକାରେ ସସୈନ୍ୟ କେରଳରେ ପ୍ରବେଶ କଲେ ।

କେରଳରେ କୋଶଳ ରାଜକୁମାରଙ୍କ ସଙ୍ଗରେ ଅନୂଢ଼ା କନ୍ୟା ପ୍ରେମ ସୁଧାନିଧିର ବାଲ୍ୟବିବାହ ପ୍ରଥା ମତେ ବିବାହ କାର୍ଯ୍ୟ ସଂପାଦିତ ହେଲା । ବିବାହ ପରେ କୋଶଳ ରାଜକୁମାର, ପ୍ରେମ ସୁଧାନିଧି ସଙ୍ଗେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ ।

ଶ୍ୱଶୁରାଳୟରେ ଅନୂଢ଼ା କନ୍ୟା ପ୍ରେମ ସୁଧାନିଧିର ଯୌବନ ପ୍ରାପ୍ତି ଘଟିଲା । ପ୍ରେମ ସୁଧାନିଧିର ଜଣେ ପ୍ରିୟ ଦାସୀ ଆସି ରାଜ

କୁମାରଙ୍କ ଆଗରେ ଏହି ଶୁଭ ସଂବାଦ ଜଣାଇଲା ଓ ସଖୀର ପ୍ରଥମ ଯୌବନ ବର୍ଣ୍ଣନା କଲା । ଏହା ଶୁଣି ରାଜକୁମାର ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ତାଙ୍କର ବାଳିକା ବଧୂକୁ ଦେଖିବାକୁ ଉଦ୍‌ଗ୍ରୀବ ହୋଇ ଉଠିଲେ ଓ ଦାସୀକୁ ଏଥିପାଇଁ ଅନୁରୋଧ କଲେ । ତା'ପରେ ଜ୍ୟୋତିଷ ଡକାଇ ମିଳନ ଲଗ୍ନ ଦେଖାଇଲେ ।

ଏହାପରେ ନାୟକ ନାୟିକା କେଳି ଗୃହରେ ପରସ୍ପରର ସାନ୍ନିଧ୍ୟ ଲାଭ କଲେ । କେଳି ଗୃହକୁ ନାୟିକା ପ୍ରେମ ସୁଧାନିଧିକୁ ପ୍ରେରଣ କଲାବେଳେ, ସଖୀମାନଙ୍କର ଉପଦେଶାତ୍ମକ ଉକ୍ତି ତାତ୍ପର୍ଯ୍ୟ ପୂର୍ଣ୍ଣ ହୋଇଛି ।

"ସଖି, ଏ ନିଶିରେ ପ୍ରିୟ ବାଧ୍ୟ ହୋଇବ ।
ସଖି, ଏ ନିଶିରେ ପ୍ରିୟ ବାଧ୍ୟ ନୋହିବ ଗୋ ।
ଫିଟିବାକୁରେ ସୁମନ କରି ଦୃଢ଼ ବନ୍ଧ ।
ନ ଫିଟିବାକୁ କୁସୁମ କରି ଦୃଢ଼ ବନ୍ଧ ଗୋ ॥
ପୁଣି ବାମାକୁ କହନ୍ତି ହାସ୍ୟେ ସହଚରୀ ।
କାମେ ବିପକ୍ଷ ନୋହିବୁ ହୋଇବୁ ସୁନ୍ଦରୀ ଗୋ ॥
ଆଲିଙ୍ଗନେ ଦୂର ନ କରିବୁ ତରଳକୁ ।
ଆଲିଙ୍ଗନେ ଦୂର କରିବୁ ତୁ ତରଳକୁ ଗୋ ॥" ଇତ୍ୟାଦି ।

ନିର୍ଜନ କେଳି ଗୃହରେ ନାୟକ ନାୟିକାଙ୍କ ବିବସ୍ତ ବିହାରର ଏକ ମାତ୍ର ମୂକ ସାକ୍ଷୀ ରହିଲା—ନିଷ୍ପ୍ରଭ ଦୀପ ଶିଖା । ପରସ୍ପରକୁ ଲାଭ କରି ସେ ଦୁହେଁ କୃତାର୍ଥ ହେଲେ ।

ଏହାପରେ କଛି ଦିନ ଆନନ୍ଦରେ ଅତିବାହିତ ହେଲା ।

କିନ୍ତୁ ପିତୃ ଆଦେଶରେ ନବ ବିବାହିତ ରାଜପୁତ୍ରଙ୍କୁ ମାଳବ ଦେଶ ଗମନ କରିବାକୁ ପଡ଼ିଲା । ସେଇଠି ସେ ଏକ ବର୍ଷକାଳ ଅଟକି ଗଲେ । ମିଳନ ସ୍ୱପ୍ନ ଅଧୂରା ରହିଲା, ପ୍ରେମ ପଥରେ ପ୍ରଥମ କରି ପାଦ ପକାଇଥିବା ପ୍ରେମିକ ପ୍ରେମିକା ଦାରୁଣ ବିରହ ଯନ୍ତ୍ରଣା ଭୋଗିଲେ । ସେମାନଙ୍କ ନିକଟରେ ନିକଟ ଅତୀତର ମଧୁମୟ ସ୍ମୃତି ପେଟିକା ଉନ୍ମୋଚିତ ହେଲା । ଅତୀତର ଶତ ଶୃଙ୍ଖଳା ଜନିତ ଶାଢ଼ୀ ପାଲଟା, ଦର୍ପଣ ସମ୍ମୁଖରେ ବସି ଅପଲକ ନେତ୍ରରେ ପରସ୍ପରର ପ୍ରତିବିମ୍ବ ଦେଖି ମୁଗ୍ଧ ବିଭୋର ହେବା, ପରସ୍ପରକୁ ରଙ୍ଗ ରହସ୍ୟ କରିବା ପ୍ରଭୃତି ମାଦକଭରା ଦୃଶ୍ୟରାଜି ମାନସ ଚକ୍ଷୁରେ ଦେଖା ଦେଇ ସେମାନଙ୍କ ମନ ଓ ଶରୀରକୁ ଆନ୍ଦୋଳିତ କରିବାକୁ ଲାଗିଲା ।

ସ୍ୱୀୟ ବିରହ ଜ୍ୱାଳାକୁ ନାୟିକା ପ୍ରେମ ସୁଧାନିଧି ଆଗରେ ଉପସ୍ଥାପନ କରିବା ପାଇଁ, କାଳି ଦାସଙ୍କ ଯକ୍ଷ ଭଳି, ପ୍ରେମ ସୁଧାନିଧି କାବ୍ୟର ନାୟକ, ବସନ୍ତ-କୋକିଳ ନିକଟରେ ନିଜର ସମସ୍ତ ଆତ୍ମବେଦନା ଉପସ୍ଥାପନ କଲା । କେବଳ ସେତିକି ନୁହେଁ, ନିଜର ମନୋବେଦନା ଜ୍ଞାପନ କରି ନାୟକ ତା'ର ପ୍ରିୟତମା ପାଖକୁ ପତ୍ର ଲେଖିଲା—

"ତୁ ମୋ ପ୍ରତି ଚକ୍ଷୁ ଯେଣୁ ହୋଇଛୁ ଅନ୍ତର ।
ଦିଶୁ ନାହିଁ, କିଛୁ ନାହିଁ ଆନ ପ୍ରତିକାର ।
ନୂଆ ଅନ୍ଧ ପ୍ରାପ୍ତ ହୋଇ
ଅନୁକ୍ଷଣେ ଆକୁଳ, ପ୍ରାଣ ସହି ।

ଦୂରେ ଥିଲେ ପାଶେ ଅଛୁ, ଥିବୁ ଏହା ଘେନ ।
କେତେଦୂରେ ଚନ୍ଦ୍ର କେତେଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର ।
ଯେତେଦୂରେ ଥିଲେ ଯେ ଯାହାର ସେ ତାହାର ।

ଯେତେଦୂରେ ପଦ୍ମ ପଡ଼ିଥିଲେ ସେ ନଳିନୀ ।
ତାହା କି ନୁହଇ ଆନେ ବୃକ୍ଷ ନାମ ଘେନା ।
ବନ୍ଧୁ, ହେମନ୍ତ ମୁଁ ତୋ'ର ।
ସବୁଠାରେ କୁହାଉଛି ସୁନ୍ଦରୀ-କେଶ୍ୱର ।

ଯେଣେ ଅନାଇଲେ ଇନ୍ଦ୍ର ଜାଲ ପ୍ରାୟେ ଦିଶୁ ।
'ମୁକୁର ବିମ୍ବ ପରାୟେ ପାଶକୁ ନ ଆସୁ ।
ଏଡ଼େ ହଠ କହିଁ ପାଇଁ
ମୋହ ଜାଣିବାରେ ମୁଁ ତ ଦୋଷ କରନାହିଁ ।" ଇତ୍ୟାଦି ।

ରାଜକୁମାର ନିକଟରୁ ଏ ପତ୍ର ଲାଭ କଲା ପରେ ବିରହିଣୀ ବଧୂର ପ୍ରତିକ୍ରିୟା ନିମ୍ନ ଲିଖିତ ପ୍ରକାରେ ପ୍ରକାଶ କରାଯାଇଛି —

"ମୁଦ ଲଭି ମୁଦକୁ ଯେମନ୍ତ କାନ୍ତକରେ ।
ଜନ୍ମ-ଅନ୍ଧ ନେତ୍ରେ ଦାନ ପାଇଲା ପ୍ରକାରେ ।
ମାଗୀ ବନ୍ଧ ପ୍ରାୟେ କରି
ଫେଡ଼ି ପଢ଼େ ଆରମ୍ଭିଲା ବକ୍ଷର ବସ୍ତର ।

× × × ×

ରାମ ଆଉଁ ସୀତା ଯଥା ହାସିତ ରାବଣେ ।
ତୁମ୍ଭେ ଆଉଁ ମୁଁ ହେମନ୍ତ ହେଲି ଫୁଲ ବାଣେ ।

ଲଜ୍ଜା ହେଉଛି କାହାକୁ ।
ଚେତ ଇବାର ଆପୃତ୍ତ ସିନା ମୋ ନାହାକୁ ।
ବେଶକାଳେ ମୁକୁର ପର୍ଯ୍ୟେ ଆଗେ ଅଛୁ ।
ବସନ ପ୍ରାପ୍ୟେ ଶ୍ରୀ ଅଙ୍ଗେ ନରତେ ଲଗିଛୁ ।
ମୁଁ ଯେ ସେବକୀ ପ୍ରକାରେ
ବସି ଅଛୁ ପାଦ ତଳେ ଶଯ୍ୟନ କାଳରେ ।" ଇତ୍ୟାଦି ।

ପ୍ରେମିକାର ପତ୍ର ପାଠ ପରେ କୋଶଳ ରାଜକୁମାର ପ୍ରବାସ ଛାଡ଼ି ସ୍ୱଦେଶ ଯାତ୍ରା କଲେ ଓ ପ୍ରିୟତମା ପ୍ରେମ ସୁଧାବ୍ଧି ସଙ୍ଗେ ମିଳତ ହେଲେ ।



# ସୁବର୍ଣ୍ଣ ରେଖା

'ସୁବର୍ଣ୍ଣ ରେଖା' କାବ୍ୟ ସଂପର୍କରେ କବି ଉପେନ୍ଦ୍ର ଭଞ୍ଜ ଉଲ୍ଲେଖ କରିଛନ୍ତି ।

"ପାଞ୍ଚ ଛାନ୍ଦେ ଶେଷ ହୋଇଲା ଏ ରସ କରିବ ରସିକ ବଶ ।
ହେ ଜନେ'ପ୍ରେମ ସୁଧାନିଧି' 'ରସିକ ହାରାବଳୀ'ର ଏ ଶେଷ ॥
ସୁବର୍ଣ୍ଣ ରେଖାର ବର୍ଣ୍ଣନା ଯେତେକ ରସେ ଏହୁ ତିନ ଗୀତ ।
କହେ ଉପଇନ୍ଦ୍ର ଭଞ୍ଜ ଖରବର ଅନୁଭବୁଁ ଏ ବିହିତ ॥"

ଏଥିରେ କବି ସମ୍ରାଟ ସ୍ୱରଚିତ କାବ୍ୟ 'ପ୍ରେମ ସୁଧାନିଧି' ଓ 'ରସିକ ହାରାବଳୀ'ର ଉଲ୍ଲେଖ କରିଅଛନ୍ତି ଓ 'ସୁବର୍ଣ୍ଣ ରେଖା' କାବ୍ୟ ଏହାର ଶେଷ ଅଂଶ ବୋଲି ଉଲ୍ଲେଖ କରିଛନ୍ତି । ପୁଣି ସେ କହିଛନ୍ତି ଯେ, ସୁବର୍ଣ୍ଣ ରେଖା କାବ୍ୟ ତାଙ୍କର ସ୍ୱୀୟ ଅନୁଭବରୁ ଖ୍ୟାତ ହୋଇଛି ।

ରସିକ ହାରାବଳୀ, ପ୍ରେମ ସୁଧାନିଧି ଓ ସୁବର୍ଣ୍ଣ ରେଖା ଏହି ତିନି କାବ୍ୟର ଅନ୍ତଃସ୍ୱର ସମାନ । ସେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ଯେ, ଏ ତିନି କାବ୍ୟ ସେ ତାଙ୍କ ଅନୁଭବରୁ ହିଁ ରଚନା କରିଛନ୍ତି । କବି ମାନସ ଏ କାବ୍ୟମାନଙ୍କରେ ମାନସ-ହଂସ ରୂପେ କ୍ରୀଡ଼ିତ ।

ଏ ତିନି ସ୍ଥଳରେ ନାୟିକାର ନାମୋଚ୍ଚାରଣ କରାଯାଇ ଥିଲେ ହେଁ, ନାୟକର ନାମୋଲ୍ଲେଖ ନାହିଁ । ଏଥିରୁ ମନେ ହୁଏ, କବି ଉପେନ୍ଦ୍ର ସ୍ୱୟଂ ଏ କାବ୍ୟମାନଙ୍କର ନାୟକ ହୋଇଥିବାରୁ ଓ ନିଜର ଅନୁଭୂତିକୁ କେନ୍ଦ୍ର କରି ରସ ସୃଷ୍ଟି କରିଥିବାରୁ, ନାୟକ ମାନଙ୍କର ନାମୋଲ୍ଲେଖ କରିବାକୁ ଇଚ୍ଛା ପ୍ରକାଶ କରି ନାହାନ୍ତି ।

କାବ୍ୟକର୍ତ୍ତୀର ନାୟକ ରୂପେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ ଧରାଯାଇଛି, ଭଞ୍ଜଙ୍କ ବ୍ୟକ୍ତିଗତ ଜୀବନୀ, କାବ୍ୟ ରଚନା ଓ ସୃଷ୍ଟିକଳା ସଂପର୍କରେ ଅନେକ ନୂତନ ତଥ୍ୟ ମିଳିବାର ଅବକାଶ ରହିଛି ।

ରସ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ, ସୁବର୍ଣ୍ଣ ରେଖା କାବ୍ୟରେ ରସ-ଶ୍ରେଷ୍ଠ ଶୃଙ୍ଗାର ରସକୁ ହିଁ ପ୍ରାଧାନ୍ୟ ଦିଆଯାଇଛି ।

ରସିକ ହାରାବଳୀ ଓ ପ୍ରେମ ସୁଧାନିଧି କାବ୍ୟ ଦ୍ୱୟରେ ବର୍ଷର ଷଡ଼ଋତୁ ଅର୍ଥାତ୍ ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶୀତ ଓ ବସନ୍ତ ଋତୁମାନଙ୍କରେ ନାୟକ ନାୟିକାର ଋତୁ ଅନୁସାରେ ବିରହ ବର୍ଣ୍ଣନା କରାଯାଇଥିବା ସ୍ଥଳେ, ସୁବର୍ଣ୍ଣ ରେଖା କାବ୍ୟରେ ସେହିପରି ବିସ୍ତୃତ ବିରହ ବର୍ଣ୍ଣନା ନାହିଁ । କିନ୍ତୁ ନିୟମ ରକ୍ଷା କରିବାକୁ ଯାଇ ସେ ଏଥିରେ ବର୍ଷା ଋତୁରେ ନାୟକର ବିରହ ଅବସ୍ଥାକୁ ଅତି ହୃଦ୍ୟ ଭାଷାରେ ପରିବେଷଣ କରିଅଛନ୍ତି ।

ସୁବର୍ଣ୍ଣ ରେଖା କାବ୍ୟର ମୋଟ ଛାନ୍ଦ ସଂଖ୍ୟା ୫, ଏଥିରୁ ଗୋଟିଏ ଛାନ୍ଦରେ ସମ୍ଭୋଗ ରସ ବର୍ଣ୍ଣନା କରାଯାଇଛି ଓ ତିନୋଟି ଛାନ୍ଦରେ ବିଚ୍ଛେଦ ବର୍ଣ୍ଣନା ରହିଛି ।

ରସିକ ହାରାବଳୀ ଓ ପ୍ରେମ ସୁଧାନିଧି କାବ୍ୟଦ୍ୱୟ ପରି ସୁବର୍ଣ୍ଣ ରେଖା ହିଁ ସୁବର୍ଣ୍ଣ ରେଖା କାବ୍ୟର ନାୟିକା ।

ଏହାର କାହାଣୀ ହେଲା, କୋଶଳ ଦେଶର ରାଜକୁମାର ଅନ୍ୟ ଏକ ଦେଶର ମନ୍ତ୍ରୀ କନ୍ୟା ସୁବର୍ଣ୍ଣ ରେଖାର ରୂପ ଯୌବନରେ ଆକୃଷ୍ଟ ହୋଇ ତାକୁ ବିବାହ କରିବାକୁ ଇଚ୍ଛା ପୋଷଣ କଲେ । ଶେଷରେ ବିଧି ବିଧାନ ଅନୁସାରେ ପରିଣୟ ଉତ୍ସବ ଅନୁଷ୍ଠିତ ହେଲା । କୋଶଳ ରାଜକୁମାରଙ୍କ ଇଚ୍ଛା ପୂର୍ଣ୍ଣ

ହେଲେ ଓ ସେ ସୁନ୍ଦରୀ ମନ୍ତ୍ରୀ-କନ୍ୟା ସୁବର୍ଣ୍ଣରେଖାକୁ ପତ୍ନୀରୂପେ ଲାଭକଲେ ।

ମଧୁଶଯ୍ୟା ରାତିରେ ପ୍ରେମିକ ରାଜକୁମାର ସଙ୍ଗରେ ଯୁବତୀ କନ୍ୟା ସୁବର୍ଣ୍ଣରେଖାର ଶୁଭମିଳନ ହେଲା । ଉଭୟେ ଉଭୟଙ୍କ ସାନ୍ନିଧ୍ୟ ଲାଭ କରି ମୋହିତ ହେଲେ । ଭାବିଲେ, ସେମାନଙ୍କ ଜୀବନ-ଯୌବନ ସାର୍ଥକ ହୋଇଛି । ଯୁବକ ଯୁବତୀଙ୍କର ଯୁଗଳ ମିଳନରେ ରାତି ପୁଷ୍ପବତୀ ହେଲା ।

ନାୟକ ନାୟିକା ପରମ ଆନନ୍ଦରେ କାଳଯାପନ କରିବାକୁ ଲାଗିଲେ ; କିନ୍ତୁ ଏ ମିଳନରେ ବାଧା ଉପୁଜିଲା । କାର୍ଯ୍ୟୋପଲକ୍ଷରେ ପିତାଙ୍କ ଆଦେଶରେ କୋଶଳ ରାଜକୁମାରଙ୍କୁ ବିଦେଶ ଯାତ୍ରା କରିବାକୁ ପଡ଼ିଲା । ଫଳରେ ନାୟକ ନାୟିକା ବିରହାନଳରେ ଦଗ୍ଧ ହେବାକୁ ଲାଗିଲେ । ବର୍ଷାଋତୁର ଆଗମନ ଦେଖି ବିରହୀ ନାୟକର ମନ ଅସ୍ଥିର ହେଲା । ତା'ର ମନେହେଲା, ପ୍ରେମିକା ପାଖରେ ନ ଥିଲେ, ବର୍ଷାଋତୁ ପ୍ରେମିକକୁ ଯମଦଣ୍ଡ ଦେବାକୁ ଧରାବତରଣ କରେ । ସେ ନାୟିକାର ଅତୀତ ସ୍ମୃତିକୁ ସ୍ମରଣ କରି ବ୍ୟସ୍ତବିବ୍ରତ ହେଲେ ।

ବିରହ ପରେ ଅବଶେଷରେ ନାୟକ ସୁବର୍ଣ୍ଣରେଖା ପାଖକୁ ଫେରିଆସିଲେ । ନାୟକ ନାୟିକାର ବିରହ ପରେ, ମିଳନ ଅତ୍ୟନ୍ତ ସ୍ୱାଦ୍ୟ ହେଲା । କବିଙ୍କ ବାକ୍ୟରେ—

"ହିମ ଶିଶିର ଯେ ବସନ୍ତ ଗ୍ରୀଷମ ବରଷା ଶରଦ ପୁଣି ।
ନାନା ବିନୋଦରେ ମନ୍ଦିର ଭିତରେ ବଞ୍ଚେ ରସିକ ରମଣୀ ।"

। ଇତ୍ୟାଦି ।

# ଲାବଣ୍ୟବତୀ

'ଲାବଣ୍ୟବତୀ' କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଆଦ୍ୟ ସୃଷ୍ଟି ମଧ୍ୟରୁ ଅନ୍ୟତମ । ଏ କାବ୍ୟ କ୍ଷୁଦ୍ର ଅବୟବବିଶିଷ୍ଟ ଓ ଏଥିରେ ସାତୋଟି ଛାନ୍ଦ ରହିଛି । କାବ୍ୟ ନାୟିକା 'ଲାବଣ୍ୟବତୀ'ର ନାମ ଅନୁସାରେ କାବ୍ୟର ନାମକରଣ କରାଯାଇଛି ।

ଲାବଣ୍ୟବତୀର ଭାଷା ଭଞ୍ଜ କବିଙ୍କର ଅନ୍ୟାନ୍ୟ କାବ୍ୟମାନଙ୍କ ଅପେକ୍ଷା ସରଳ ଓ ଭାବ ମଧ୍ୟ ସେତେ ଜଟିଳ ନୁହେଁ । ତଥାପି ଏହାର ସରଳ ତରଳ ପଦାବଳୀ, ଲୋକପ୍ରଚଳିତ ଉପମା, ଅଳଙ୍କାର ସର୍ବଜନାଦୃତ ହେବାରେ ସହାୟକ ହୋଇଥାଏ ।

ଏହାର କାହାଣୀ ହେଲା, କେରଳ ଦେଶର ରାଜାଙ୍କ ନାମ 'କୁସୁମଶେଖର' ଓ ରାଣୀଙ୍କ ନାମ 'ପଦ୍ମାବତୀ' । ସେମାନଙ୍କ କନ୍ୟାର ନାମ 'ଲାବଣ୍ୟବତୀ' ।

ଲାବଣ୍ୟବତୀ ଏପରି ସୁନ୍ଦରୀ ଯେ, ସ୍ୱୟଂ ପାର୍ବତୀ, ଲକ୍ଷ୍ମୀଙ୍କ ସମେତ ଅପ୍‌ସରା ଓ କିନ୍ନରୀମାନେ ତା'ର ସୌନ୍ଦର୍ଯ୍ୟ ସଙ୍ଗରେ ତାଳ ଦେଇ ନ ପାରି ଲଜ୍ଜା ଅନୁଭବ କରନ୍ତେ ।

ରାଜା କୁସୁମଶେଖର, ତାଙ୍କର କନ୍ୟା ଲାବଣ୍ୟବତୀ ବିବାହଯୋଗ୍ୟ ବୟସରେ ଉପନୀତ ହେବା ଦେଖି, ତା' ପାଇଁ ଯୋଗ୍ୟ ବରପାତ୍ର ଅନୁସନ୍ଧାନରେ ବ୍ୟସ୍ତ ରହିଲେ ।

ଏଣେ ସିଂହଳ ଦେଶର ରାଜା ମଧୁକରଙ୍କର ଏକ ପୁତ୍ର ଥାଏ । ସେ ମଧ୍ୟ ଯୁବକ ହେବାରୁ ତା' ପାଇଁ ଉପଯୁକ୍ତ ପାତ୍ରୀ ଅନ୍ୱେଷଣ ନିମନ୍ତେ ରାଜା ତାଙ୍କ ରାଜ୍ୟର ଦୂତମାନଙ୍କୁ ରାଜପୁତ୍ରର ଚିତ୍ରପଟ ସହ ବିଭିନ୍ନ ଦେଶକୁ ପ୍ରେରଣ କରିଥାନ୍ତି । ସେହି ଦୂତମାନେ କେରଳ ରାଜ୍ୟରେ ପହଞ୍ଚି ଜାଣିବାକୁ ପାଇଲେ ଯେ, କେରଳ ରାଜଜେମା 'ଲାବଣ୍ୟବତୀ' ଅତ୍ୟନ୍ତ ସୁନ୍ଦରୀ । ସେମାନେ ସୁନ୍ଦରୀ ଲାବଣ୍ୟବତୀକୁ ନିଜର ଯୁବରାଜଙ୍କ ପାଇଁ ମନୋନୀତ କରି, ସେହି ରାଜ୍ୟର ମାଳିଆଣୀ ହସ୍ତରେ ଯୁବରାଜଙ୍କ ଚିତ୍ରପଟ ଦେଇ ରାଜକୁମାରୀଙ୍କ ନିକଟକୁ ପଠାଇଲେ ।

କେରଳ ରାଜକୁମାରୀ ଭାନୁମତୀ ମାଲ୍ୟାଣୀ ହସ୍ତରେ ଗୌଡ଼ ରାଜକୁମାରଙ୍କ ଚିତ୍ରପଟ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହେଲା ଓ ତାଙ୍କୁ ବିବାହ କରିବା ନିମନ୍ତେ ଇଚ୍ଛା ପ୍ରକାଶ କଲା । କନ୍ୟା ଭାନୁମତୀର ମନୋଭାବ ଜାଣି, କେରଳ ରାଜା ମଧ୍ୟ ବିବାହ ପ୍ରସ୍ତାବରେ ରାଜି ହେଲେ ଓ ଗୌଡ଼ ରାଜାଙ୍କ ନିକଟକୁ କନ୍ୟା ଭାନୁମତୀର ଚିତ୍ରପଟ ପ୍ରେରଣ କଲେ ।

ଏହିପରି ଭାବରେ କେରଳ ରାଜାଙ୍କ ସଙ୍ଗରେ ଗୌଡ଼ ରାଜାଙ୍କର ବନ୍ଧୁତ୍ୱ ସ୍ଥାପିତ ହେଲା । ବିବାହ ଲଗ୍ନ ସ୍ଥିର କରି ସେମାନେ ନିଜର ପୁତ୍ର-କନ୍ୟାଙ୍କ ବିବାହ କାର୍ଯ୍ୟ ସମାପନ କଲେ ।

ବିବାହ ପରେ ନାୟିକା ସହ ନାୟକ କେରଳ ରାଜ୍ୟରେ ସାତଦିନ କାଳ ଅବସ୍ଥାନ କଲେ । ସେ ଦୁହେଁ ପତିପତ୍ନୀ ଭାବରେ ଅବସ୍ଥାନ କରି ପରମ ଆନନ୍ଦ ଲାଭ କଲେ ।

ଦୁହେଁ ଦୁହିଁ ସାତୋଟି ଦିନ ସାତ ମୂହୂର୍ତ୍ତ ପରି ଅତିବାହିତ ହେଲା । କେରଳ ରାଜା ନାନାବିଧ ଯୌତୁକ ସହ କନ୍ୟା ଓ ଜାମାତାଙ୍କୁ ଗୌଡ଼ ରାଜ୍ୟକୁ ପଠାଇଦେଲେ ।

ନବଦମ୍ପତି ଗୌଡ଼ ରାଜ୍ୟରେ ହୃଷ୍ଟ ମନା ଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ ।

କିନ୍ତୁ ଏ ମିଳନରେ ହଠାତ୍ ବାଧା ଉପୁଜିଲା । ଦିନେ ରାଜପୁତ୍ର ପିତୃଦିବସ ପାଳନ ଉପଲକ୍ଷେ ମୃଗ ଶିକାର କରିବା ପାଇଁ ବନକୁ ଗଲେ ।

ରାଜପୁତ୍ର ଶିକାର ସନ୍ଧାନରେ ବନ ମଧ୍ୟରେ ଭ୍ରମଣ କରୁଛନ୍ତି, ତାଙ୍କର ସୁନ୍ଦର ରୂପ ଦେଖି ଏକ ଅସୁର-କନ୍ୟା ପ୍ରଲୋଭିତା ହୋଇ ତାଙ୍କୁ ହରଣ କରିନେଲା ।

ରାଜପୁତ୍ରଙ୍କ ସଙ୍ଗରେ ଯେଉଁ ସୈନ୍ୟମାନେ ଯାଇଥିଲେ ସେମାନେ ରାଜପୁତ୍ରଙ୍କୁ ନ ଦେଖି ବ୍ୟସ୍ତ ବିବ୍ରତ ହେଲେ ଓ ତାଙ୍କୁ

ଖୋଜିବା ପାଇଁ ପ୍ରାଣପଣ ଚେଷ୍ଟାକଲେ । ଶେଷରେ ନିରାଶହୋଇ ରାଜଧାନୀକୁ ଫେରିଆସି ରାଜାଙ୍କ ଆଗରେ ସବୁକଥା ପ୍ରକାଶକଲେ ।

ରାଜକୁମାରୀ ବନ ମଧ୍ୟରେ ଅଦୃଶ୍ୟ ହେବା ଶୁଣି ରାଜାଙ୍କ ମନରେ ଖୁବ୍ ଦୁଃଖ ଜାତ ହେଲା । ରାଜକନ୍ୟା ଓବର୍ଣ୍ଣର ମନ ଭାଙ୍ଗିପଡ଼ିଲା ।

ନାୟକ ନାୟିକା ଉଭୟେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ସନ୍ତାପିତ ହେଲେ । ସେମାନଙ୍କ ଜୀବନ ଦୁର୍ବିସହ ମନେହେଲା । ବର୍ଷା ଋତୁ ଆଗମନରେ ନାୟିକା ବିଚ୍ଛେଦରେ ନାୟକର ମାନସ ପଟରେ ଅତୀତର ସୁଖସଂଯୋଗ ଚିତ୍ର ଭାସି ଉଠିଲା । ସେ ଅତୀତର ମାନ, ଅଭିମାନ, କ୍ରୀଡ଼ା, ଆଲିଙ୍ଗନ ପ୍ରଭୃତି କଥା ଭାବି ସନ୍ତାପିତ ହେଲା । ନାୟିକା ମଧ୍ୟ ଅନୁରୂପ ଚିନ୍ତାରେ ବ୍ୟସ୍ତ ବିବ୍ରତ ହେଲା ।

ନାୟିକାର ବିରହକାଳୀନ ଅବସ୍ଥା ବର୍ଣ୍ଣନାରେ କବି ବର୍ଣ୍ଣନା କରିଛନ୍ତି—

"ଚଣ୍ଡୀ ବରଣି ଦ୍ୱିଜଙ୍କୁ ଡକାଇ
ହନୁ, ଚମ୍ପା ଶିବ ଗଣେଶେ ଦେଇ
ପୂଜା କରାଇଲେ ଦୁର୍ଗାମାଧବ
ସଖି ଜାବେ ଥାଉ ଆସିବେ ଶିବ
ଅତି ବ୍ରୀଡ଼ ଘଟଣ
ଜରନ୍ତି ଜେମାକୁ ସେ ଅଜଛନ୍ତି । ୭-୭ ।
ବ୍ୟଜନ ବନ୍ଧ ସେ ଉଶୀର ବାଟି
ବନ୍ଧନ୍ତି ସଜମ ଅଙ୍ଗରେ ଘୋଟି ।
କୋମଳ ପଲ୍ଲବ ଶେଯେ ଶୁଆଇ
ଚନ୍ଦନ ଲେପନ୍ତି ଚନ୍ଦ୍ର ମିଶାଇ
ମୋହ ହେବା ବେଳେ
କହନ୍ତି କାନ୍ତ କଥା କର୍ଣ୍ଣମୂଳେ । ୭-୭ । ଇତ୍ୟାଦି

କ୍ରମେ ବଧୂ ଭାବବତୀର ଦୁରବସ୍ଥା କଥା ରାଜାଙ୍କ କାନକୁ ଗଲା । ରାଜା ଅତିଶୟ ଦୁଃଖ ପ୍ରକାଶକଲେ । ଘଟଣାକ୍ରମେ ଜଣେ ମୁନି ଆସି ପହଞ୍ଚିବାରୁ, ରାଜା ତାଙ୍କୁ ଯଥାବିଧି ମାନ୍ୟ ଜଣାଇ, ପୁତ୍ରବିଚ୍ଛେଦ ଦୁଃଖ କଥା ପ୍ରକାଶକଲେ ।

ମୁନି ଧ୍ୟାନବଳରେ ଜାଣିପାରିଲେ ଯେ, ରାଜପୁତ୍ର ଅସୁର ପୁରରେ ଅଛି । ତେଣୁ ସେ ରାଜାଙ୍କୁ ଆଶ୍ୱାସନା ଦେଇ ପରଦିନ ପ୍ରଭାତରେ ପୁତ୍ର ସଙ୍ଗେ ମିଳନ କରାଇଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସଙ୍ଗେ ସଙ୍ଗେ ସେ ଯୋଗବଳରେ ଯାଇ ଅସୁର ପୁରରେ ପ୍ରବେଶ କଲେ ଓ ସେଠାରୁ ରାଜପୁତ୍ରଙ୍କୁ ନେଇଆସି ତାଙ୍କ ପିତାଙ୍କ ସଙ୍ଗେ ଭେଟ କରାଇଲେ ।

ଅପହୃତ ପୁତ୍ରକୁ ପାଇ ବୃଦ୍ଧ ରାଜା ଅତିଶୟ ଆନନ୍ଦ ପ୍ରକାଶ କଲେ ।

ପିତାଙ୍କୁ ଯଥାବିଧି ମାନ୍ୟ ଜଣାଇ ରାଜପୁତ୍ର ପ୍ରିୟତମା ଭାବବତୀର ଅନ୍ତଃପୁରରେ ପ୍ରବେଶ କଲେ । ସେଠାରେ ଭାବବତୀର କରୁଣ ଅବସ୍ଥା ଦେଖି ମନଦୁଃଖ କଲେ । ତା'ପରେ ତାଙ୍କୁ ନାନାପ୍ରକାର ଆଶ୍ୱାସନା ବାଣୀ ଶୁଣାଇଲେ । ପ୍ରିୟତମର ଆଗମନ ଦେଖି ରାଜକନ୍ୟା ଭାବବତୀ ପ୍ରସନ୍ନ ହେଲା । ଦୁହେଁ ଦୁହିଁଙ୍କୁ ମନ ପୂରାଇ ଚାହିଁଲେ । ତା'ପରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ସେ ଦୁହେଁ ଯେଉଁ କରୁଣ ଦଶା ଭୋଗ କରିଥିଲେ, ତାକୁ କୁହାକୁହି ହେଲେ । ନାୟକ ଭାବାବେଶରେ ପ୍ରିୟତମା ଆଗରେ ପ୍ରତିଜ୍ଞାକଲା—

"ବର ନିତମ୍ବିନୀ ଜୀବ ଥିବାଯାକେ ନୋହିବ ଲବେ ଅନ୍ତର
ତରଳ-ନୟନା ନିୟମ କରୁଛି ତୁହିଁ ମୁହିଁ ଗଙ୍ଗାଧର । ୭-୧୫

ଏହିପରି ଭାବରେ ବହୁକାଳ ପର୍ଯ୍ୟନ୍ତ ସେମାନେ ସୁଖରେ କାଳ ଯାପନ କଲେ ।

# ଚନ୍ଦ୍ରରେଖା

## ( ଅସଂପୂର୍ଣ୍ଣ )

କବି ଉପେନ୍ଦ୍ରଭଞ୍ଜଙ୍କ ସ୍ୱରଚିତ ଗ୍ରନ୍ଥ 'ଛନ୍ଦକାବ୍ୟ କନ୍ଦୋଦୟ'ରେ ତାଙ୍କ ରଚିତ ବହୁ କାବ୍ୟ ଓ ଗ୍ରନ୍ଥର ନାମୋଲ୍ଲେଖ ଥିଲେ ମଧ୍ୟ, ଅଧୁନା ପ୍ରାପ୍ତ ଚନ୍ଦ୍ରରେଖା ( ଅସଂପୂର୍ଣ୍ଣ ) କାବ୍ୟର ନାମୋଲ୍ଲେଖ ନାହିଁ ; କିନ୍ତୁ ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଡକ୍ଟର ହରେକୃଷ୍ଣ ମହତାବ, କବିଶେଖର ଚିନ୍ତାମଣି ପ୍ରମୁଖ ଆଲୋଚକ ମାନେ ଏ କାବ୍ୟର ଅସ୍ତିତ୍ୱକୁ ସ୍ୱୀକାର କରନ୍ତି । ଏଥିରୁ ମନେହୁଏ, କବି ଉପେନ୍ଦ୍ରଭଞ୍ଜ 'ଛନ୍ଦକାବ୍ୟ କନ୍ଦୋଦୟ' ଗ୍ରନ୍ଥ ରଚନା କରିବାପରେ ଚନ୍ଦ୍ରରେଖା କାବ୍ୟ ରଚନା କରିଥିବେ ।

ଭଞ୍ଜନଗରସ୍ଥ 'ଭଞ୍ଜ ସାହିତ୍ୟ ପରିଷଦ' ଚନ୍ଦ୍ରରେଖା କାବ୍ୟର ନବମ ଛାନ୍ଦ ଓ ଅଷ୍ଟାଦଶ ଛାନ୍ଦ ସଂଗ୍ରହ କରି, ୧୯୬୨ ଭଞ୍ଜ ଜୟନ୍ତୀ ବାସରରେ ପ୍ରକାଶ କରିଅଛନ୍ତି ।

ଭଞ୍ଜୀୟ କାବ୍ୟର ବର୍ଣ୍ଣନା, ପ୍ରେମ ଚିତ୍ରଣ ଓ କଥାବସ୍ତୁ ପ୍ରାୟ ଏକଧରଣର କହିଲେ ଚଳେ । ତେଣୁ ପ୍ରତ୍ୟେକଟିରେ ଏକପ୍ରକାର ଭାବ ତଥା ଭାଷା ଅନୁଭୂତ ହୁଏ । ଉଦାହରଣ ସ୍ୱରୂପ—ପ୍ରେମସୁଧାନିଧି, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ରସିକ ହାରାବଳୀରେ ନାମ ଓ ଛନ୍ଦ ଭଙ୍ଗୀର ସାମାନ୍ୟ ବ୍ୟତିକ୍ରମ ବ୍ୟତୀତ ବିଷୟବସ୍ତୁ ଓ ଘଟଣା ପ୍ରବାହ ପ୍ରାୟ ସମାନ ।

ଯୋଗିନୀ ଓ ଐନ୍ଦ୍ରଜାଲିକଙ୍କ ସାହଚର୍ଯ୍ୟରେ ପ୍ରେମିକ ଓ ପ୍ରେମିକାର ମିଳନ ଏବଂ ଶୁକ ଓ ହଂସ ପ୍ରଭୃତି ସାହାଯ୍ୟରେ ପ୍ରେମ ଚିଠାଉ ପ୍ରେରଣ ମଧ୍ୟ ଏହି ସାହିତ୍ୟରେ ସନ୍ନିବେଶିତ କରିଛି । ଏତଦ୍ ବ୍ୟତୀତ ନାୟକ ନାୟିକାର ମିଳନ ସଂପାଦନ ପାଇଁ ସାଧାରଣତଃ ଅଘଟଣଘଟଣପଟୀୟସୀ ଯୋଗମାୟାର ସାହାଯ୍ୟ ନିଆଯାଇଥାଏ । ଏହି ସାହିତ୍ୟର ଏହା ଏକ ସାଧାରଣ ଧର୍ମ କହିଲେ ଚଳେ ।

ପୁଣି ଭଙ୍ଗିମାଳ, ଅନ୍ତର୍ଲିପି ଓ ବହିର୍ଲିପି ମାଧ୍ୟମରେ ପ୍ରଶ୍ନୋତ୍ତର ଓ ବିଭିନ୍ନ ଜଟିଳ ସମସ୍ୟାର ସମାଧାନ ଓଡ଼ିଆ ରମଣୀର ଏକ ନିତ୍ୟଚର୍ଚ୍ଚିତ କଳା । ଏବେମଧ୍ୟ ପୁରପଲ୍ଲୀରେ ଏ ପରଂପରାର ପ୍ରଚଳନ ଅଛି । ଉଷାବ୍ରତ, ଦେବପର୍ବାଣୀରେ ଯେତେବେଳେ ପୁରପଲ୍ଲୀର କନ୍ୟା ଓ ବଧୂମାନେ ଏକାଠି ହୋଇ ହାସ ପରିହାସ, ଗୀତ, ନାଚ ଓ ଖେଳ କୌତୁକରେ ସମୟ ଅତିବାହିତ କରନ୍ତି, ସେତେବେଳେ ସେମାନଙ୍କ ମଧ୍ୟରେ ପଦ୍ୟାନ୍ତ ଓ ଆବୃତ୍ତିର ଢଙ୍ଗ ଦେଖାଯାଏ । ଚନ୍ଦ୍ରଛେଟଃ କାବ୍ୟରେ, ରାଜକୁମାରୀ ଚନ୍ଦ୍ରରେଖା ରାଜା ଚନ୍ଦ୍ରଧ୍ୱଜଙ୍କୁ ବନରେ ରତିକ୍ରୀଡ଼ା ସମୟରେ 'ଛନ୍ଦୋକ୍ତି' ଛଳରେ ପଚାରିଛି ।

"ସମ୍ବର ଅରିକେ ସମୁଦ୍ରେ ବାନ୍ଧିଲେ ବନ୍ଧ କାହିଁ ରଘୁବୀର
ଶିବା ଶିବାଳକ ହୃଦେ ବହିଥିଲେ ଅପାର ବୋଲନ୍ତି ନର । ୧୮-୧୧ ।

ହରିଭଜ ଭବ ସିନ୍ଧୁର କି ଲଭି ସୁରନଦୀ କି ନଦୀର
ଅମରଗଣଙ୍କର ସିନ୍ଧୁ ମନ୍ଥନରେ କି ଲଭିଲେ ଦିଗମ୍ବର । ୧୮-୧୨ ।

ଯେତେବେଳେ ହେଲୁ ମାନିନୀ ସଜନୀ କି ଚିନ୍ତିଲ ମନେ ମୋର,
ବୋଇଲା ଏଥି ବିପତ୍ତିରୁ ଉଦ୍ଧର ମାଧବ କୃପାସାଗର । ୧୮-୧୩ ।

× × × ×

ସୁବର୍ଣ୍ଣ ବର୍ଣ୍ଣରେ ଗୀତ ଶ୍ରାନ୍ତ ଶ୍ରୁତ ହୋଇଥିବ ଅର୍ଥକାର,
ଏତେକ ତ ହେଲ ଏ ବର୍ଣ୍ଣ ଭେଦନେ ହୋଇବ ଆନ ପ୍ରକାର ।୧୮-୧୬ ।

ପୁଣି, "କେ କଣ୍ଠୋପମ କେ ଇନ୍ଦୁ ବରଅଦ କେଉଁ ମନୋଜ ଆୟୁଧ
କେ ଚନ୍ଦ୍ର ଅର କେ ଅମୂଲ୍ୟ ରତନ କେ ଦୁଃଖହର ପ୍ରସିଦ୍ଧ । ୧୮-୧୮ ।

ନିଶାଚରନନ୍ଦ ଅନ୍ତର କେ ଅବା ଈଷ୍ଟୁର କି ନଇନ୍ତର,
ଶଙ୍ଖ ଚକ୍ର ଗଦା ପଦ୍ମ କଉସ୍ତୁଭ ମଣିମାର୍ପିତ ଅମ୍ବର । ୧୮-୧୯ ।

ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜ 'କବି ସମ୍ରାଟ' ଉପାଧିରେ ଭୂଷିତ । ସେ ସଂସ୍କୃତ ସାହିତ୍ୟର ମହାକବି କାଳିଦାସ, ମାଘ, ନୈଷଧ ପ୍ରମୁଖଙ୍କ ଯୋଗ୍ୟତମ ଦାୟାଦ । ତାଙ୍କ କାବ୍ୟରେ ପ୍ରେମର ସ୍ୱାଧୀନ ଚିତ୍ର ରହିଛି ସତ; କିନ୍ତୁ ତାହା ପରକୀୟା ଦୋଷଦୁଷ୍ଟ ନୁହେଁ । ଏହା ଏକନିଷ୍ଠ, ଅନାବିଳ, ଆଦର୍ଶ ପ୍ରେମର ସ୍ୱାକ୍ଷର ବହନ କରିଛି ।

ମାନବ ଜୀବନରେ ପ୍ରେମ ହେଉଛି ତା'ର ସହଜାତ ପ୍ରବୃତ୍ତି । ଭାରତୀୟ ପୁରାଣରେ ମୁନିଋଷିମାନେ ମଧ୍ୟ ଦୈହିକ ପ୍ରେମରେ ଅସ୍ଥିର ହୋଇ ଉଠିଥିବା ବର୍ଣ୍ଣିତ ଅଛି । ମାନବ ମୁହଁରେ ଯେତେ ଅନାସକ୍ତ ଆଦର୍ଶର ମନ୍ତ୍ର ବଖାଣ କଲେ ମଧ୍ୟ, ଯୌବନ କାଳରେ ସେ ରକ୍ତ-ମାଂସର ଆହ୍ୱାନକୁ ଏଡ଼ାଇ ଦେଇ ପାରେନାହିଁ । ଉପେନ୍ଦ୍ର ଭଞ୍ଜ ଦେହଧାରୀ ନର-ନାରୀଙ୍କର ରକ୍ତ, ମାଂସ ଓ ଜୀବନ-ଯୌବନର ବାସ୍ତବ ଚିତ୍ର ପରିବେଷଣ କରିଯାଇଛନ୍ତି । ଏହା ବର୍ଣ୍ଣନା କଲାବେଳେ ସେ କୌଣସି ପ୍ରକାର ମନ୍ତ୍ର-ନିୟମ, ଶୃଙ୍ଖଳା ବା ବାଧାବିଘ୍ନ ମାନି ନାହାନ୍ତି । ପ୍ରେମିକ ପ୍ରେମିକାର ପ୍ରେମଦଗ୍ଧ ମିଳନମୁଖୀ ମନର ଅସମ୍ଭାଳ ରୂପକୁ ଅବିକଳ ରୂପରେ ଉପସ୍ଥାପନ କରିଛନ୍ତି । ଏହା ଆଦର୍ଶ ନ ହେଲେ ବି ଏକାନ୍ତ ଭାବରେ ସତ୍ୟ ।

ଭଞ୍ଜୀୟ ସାହିତ୍ୟରେ ତପଗଣ ରତିକ୍ରୀଡ଼ାର ବହୁଳ ବର୍ଣ୍ଣନା ରହିଛି । ଚନ୍ଦ୍ରରେଖା କାବ୍ୟର ଅଷ୍ଟାଦଶ ଛାନ୍ଦରେ ନିମ୍ନ ଲିଖିତ ବର୍ଣ୍ଣନା ଦେଖିବାକୁ ମିଳେ :—

"ତରୁଣୀମଣି ବିପରୀତ ସୁରତ ଆରମ୍ଭିଲା କୌତୁକ ରଙ୍ଗେ
ଯେମନ୍ତ ଉପମା ହୋଇଲା ତନ୍ବୀ କି ସୁଷମା ନାହିଁ ଜଗତେ

କବରୀ ବନ୍ଧନ ଫିଟିଲା ତୁଟିଲା କଣ୍ଠରୁ ମୋତିସରି
ଅଳକା ଲୁଚିଲା ଆନନୁ ଗଳିଲା ସ୍ୱେଦବିନ୍ଦୁ ଶ୍ରମେ ଝରି ।

କଟି କାଞ୍ଚିମାଳା ଧ୍ୱନିରେ କୁଣଳା ହୋଇଲା ସମସ୍ତ ଜାଣି
ନୂପୁର ହୋଇଲା ଏମାନେ ମଞ୍ଜୁଳ ପାଦେ ଝଞ୍ଜିଲା ରମଣୀ ।

ଅଧୋମୁଖେ ବକ୍ଷେ ଉରଜ ଯୁଗଳ କରଜକୁ ଭୟ କରି
ରକ୍ଷକ କାନ୍ତ ଭୁଜକଣ୍ଠ ଆଶ୍ରିତ ଏସନ ମନେ ବିଚ୍ଛୁର ।

ଏମନ୍ତ ଦମ୍ପତି ସୁରତି ରସରେ ହୋଇଲେ ହରଷ ମନ,
ସଲଜ୍ଜିତ ହୋଇ ପିନ୍ଧିଲେ ବସନ ଅପସରିଲା ମଦନ ।

ରତିଶ୍ରାନ୍ତହର ମନ୍ଦଗନ୍ଧ ଶୀତମରୁତ ଭ୍ରମିତ କରେ,
ଏହି ସମସ୍ତରେ ସର୍ବ ପରିତୁଷ୍ଟ ବାଳୀ ମିଳି ପୁରତରେ ।" × ×

## ଚନ୍ଦ୍ରରେଖା କାବ୍ୟ କାହାଣୀ

ଚନ୍ଦ୍ରରେଖାର ନବମ ଛାନ୍ଦରେ ଉଲ୍ଲେଖ ଅଛି—ନାୟିକାର ନାମ 'ଚନ୍ଦ୍ରରେଖା' । ଅନ୍ୟାନ୍ୟ କାବ୍ୟମାନଙ୍କ ପରି କବି ଉପେନ୍ଦ୍ର ନାୟିକାର ନାମ ଅନୁସାରେ ନିଜ କାବ୍ୟର ନାମକରଣ କରି ଅଛନ୍ତି ।

ଚନ୍ଦ୍ରରେଖା ରାଜକୁମାର ଚନ୍ଦ୍ରଧ୍ୱଜଙ୍କ ନିକଟକୁ ଶୁକ ହସ୍ତରେ ସମ୍ବାଦ ପ୍ରେରଣ କରିଥିଲି । ଶୁକ ଚନ୍ଦ୍ରଧ୍ୱଜଙ୍କ ନଗର ମଧ୍ୟରେ ପ୍ରବେଶ କଲା । ଶୁକକୁ ହସ୍ତରେ ଧାରଣ କରି ରାଜା ରାଜକୁମାରୀ ଚନ୍ଦ୍ରରେଖା ବିଷୟରେ ସମସ୍ତ ବିଷୟ ତା'ଠାରୁ ଶ୍ରବଣ କଲେ ।

ଶିବ ନଟକେଶନପୁରର ରାଜା ବିଧୁଶେଖର ଓ ରାଣୀ କଳାବତୀଙ୍କ ଔରସରୁ ତ୍ରିଭୁବନ ମୋହିନୀ, ଅପୂର୍ବ ଲାବଣ୍ୟମୟୀ 'ଚନ୍ଦ୍ରରେଖା' ଜନ୍ମଲାଭ କରିଥିଲି । ସେ ଅପ୍ସରା ଠାରୁ ସୁନ୍ଦରୀ ଓ ଚନ୍ଦ୍ରବଦନ ନିବାଳି ନୟନା । ସେ ଗଜଗାମିନୀ କୁରଙ୍ଗପରି ଗତିଶୀଳା ଏବଂ କୁଟିଳ ଅପାଙ୍ଗଯୁକ୍ତା । ସେ ବିଦ୍ୟାରେ ସରସ୍ୱତୀଙ୍କ ପରି ବ୍ରହ୍ମାଙ୍କୁ ମଧ୍ୟ ସନ୍ତୋଷ କରିବାରେ ସମର୍ଥା । ଲାସ୍ୟ ଭଙ୍ଗୀମାରେ ଯୋଗିଜନ ମନକୁ ବିଚଳିତ କରିବାର ଶକ୍ତି ସାମର୍ଥ୍ୟ ତା'ର ରହିଛି ।

ଶୁକ ସଂବାଦ ଦେଲା, ପୀତାମ୍ବର ପରିହିତା, ଚୁଟିଚନ୍ଦ୍ରାନନା ଚନ୍ଦ୍ରରେଖା ଇତି ମଧ୍ୟରେ ମଦନ ବାଣରେ ଜର୍ଜରିତା ହୋଇ କାମଜ୍ୱରରେ ପୀଡ଼ା ପାଉଛି ।

ଚନ୍ଦ୍ରରେଖା ନିମନ୍ତେ ସୁଯୋଗ୍ୟ ପାତ୍ର ନ ମିଳିବାରୁ ରାଜା ବୈଶାଖ ଶୁକ୍ଳ ପଞ୍ଚମୀ ଦିନ ସ୍ୱୟମ୍ବର ବିଧାନ କରିଅଛନ୍ତି ।

ଶୁକ କହିଲା, ରାଜକୁମାରୀ ମନେ ମନେ ଚନ୍ଦ୍ରଧ୍ୱଜଙ୍କୁ ପତିରୂପେ ବରଣ କରିସାରିଛି । କେଣୁ ସେ ଯଦି ସ୍ୱୟମ୍ବର ସଭାରେ ଉପସ୍ଥିତ ନ ହୁଅନ୍ତି, ତେବେ ଚନ୍ଦ୍ରରେଖା ଜୀବନ ହାରିଦେବ ।

ଠିକ୍ ଏହି ସମୟରେ ଅଘଟଣଘଟଣପଟିୟସୀ ଯୋଗିନୀ ଆସି ଏ କଥାର ସତ୍ୟତା ପ୍ରତିପାଦନ କଲେ ।

ଏହା ଜାଣିବା ପରେ ଚନ୍ଦ୍ରଧ୍ୱଜ ତତ୍‌କ୍ଷଣାତ୍ ସ୍ୱୟମ୍ବର ସଭାରେ ଉପସ୍ଥିତ ହେବା ନିମନ୍ତେ ସଂକଳ୍ପ କଲେ । ସେ ଶୁକ ପକ୍ଷୀକୁ ସ୍ନେହ ପ୍ରଦର୍ଶନ କରି କହିଲେ—

"ଚଞ୍ଚୁ ଧରୁଅଛୁ ତୋ'ର ତା'ର ପରି ମୂର୍ତ୍ତି ତୋ'ର
କରିଥିବୁ ଏ ହୃଦୟର ଆଜନ୍ମ ସୁଖୀ
ସ୍ୱପ୍ନରେ କହିବୁ ଏତେ ଅଷ୍ଟ ରତନ ପ୍ରାଂପତେ
ଯେହ୍ନେ ତୋଷ ଲଭେ ଶରୀର ଆଜନ୍ମ ଦୁଃଖୀ,
ହୃଙ୍ଗ ପଦ୍ମ ବିକାଶ ବାସେ
ଯେସନେ ତେସନ ମୁଁ ତାହାର ସନ୍ଦେଶେ ।" ୧୮-୧୬

ରାଜା ଆଜ୍ଞା ବହନ କରି ଶୁକପକ୍ଷୀ ପ୍ରତୀକ୍ଷାମଗ୍ନା ସୁକୁନ୍ତଳା ଚନ୍ଦ୍ରରେଖା ନିକଟକୁ ପ୍ରସ୍ଥାନ କଲା । ସେ ଅବେକାଭର କଣ୍ଠରେ, ରାଜା ଚନ୍ଦ୍ରଧ୍ୱଜଙ୍କ ପ୍ରତିନିଧି ସଂପର୍କରେ ପ୍ରଶ୍ନକଲା । ଶୁକପକ୍ଷୀ ଖୁସି ମନରେ ରାଜାଙ୍କ ଆଗମନ ବାର୍ତ୍ତା ଶୁଣାଇବାରୁ ସୁକେଶୀ ଚନ୍ଦ୍ରରେଖା ଶୁକପକ୍ଷୀକୁ ସ୍ନେହ ପ୍ରଦର୍ଶନ କରି ଖାଇବାକୁ ଦେଲା ।

ପ୍ରାପ୍ତ ଅଷ୍ଟାଦଶ ଛାନ୍ଦରେ ରାଜକୁମାରୀ ଚନ୍ଦ୍ରରେଖା ଓ ରାଜା ଚନ୍ଦ୍ରଧ୍ୱଜଙ୍କର ବୈବାହିକ ଜୀବନର ମନୋଜ୍ଞ ଚିତ୍ର ପରିବେଷିତ । ଏଥିରେ ନାୟକ ନାୟିକା ଯୁଗଳର ରାଜୋଚିତ ଉପବନ ବିହାର ଓ ରତିକ୍ରୀଡ଼ା ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଅନ୍ତର୍ଲିପି, ବହିର୍ଲିପି ଓ ଛନ୍ଦୋକ୍ତି ମାଧ୍ୟମରେ ସେମାନଙ୍କ କଥୋପକଥନ ଅତ୍ୟନ୍ତ ମନୋଜ୍ଞ ହୋଇଛି ।

●

# ଶୋଭାବତୀ

ଅସଂପୂର୍ଣ୍ଣ 'ଚନ୍ଦ୍ରରେଖା' ପରି 'ଶୋଭାବତୀ' କାବ୍ୟ ମଧ୍ୟ ଭଞ୍ଜ ସାହିତ୍ୟ ପରିଷଦ, ଭଞ୍ଜନଗର କର୍ତ୍ତୃକ ୧୯୬୧ ମସିହାରେ ଭଞ୍ଜ ଜୟନ୍ତୀ ଉତ୍ସବରେ ପ୍ରକାଶିତ ହୋଇଛି ।

ଶୋଭାବତୀ କାବ୍ୟର ସୂଚନା ଶୀର୍ଷକରେ ଭଞ୍ଜ ସାହିତ୍ୟ ପରିଷଦର କର୍ମକର୍ତ୍ତାମାନେ ନିମ୍ନଲିଖିତ ମତେ ଉଲ୍ଲେଖ କରିଅଛନ୍ତି —

"ବହୁ ବାଧାବିଘ୍ନ ଅତିକ୍ରମ କରି କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ-କୃତ 'ଶୋଭାବତୀ କାବ୍ୟ' ଜୟନ୍ତୀ ପୁଣ୍ୟ ବାସରରେ ପ୍ରକାଶ ହୋଇଅଛି । ଏହି କାବ୍ୟଟି ପୂର୍ଣ୍ଣମାତ୍ରାରେ ମିଳନାହିଁ । କେବଳ ଦୁଇଗୋଟି ଛାନ୍ଦ ମିଳିଛି । X X

'ଶୋଭାବତୀ କାବ୍ୟ' କବି ସମ୍ରାଟ ନିଜେ ଲେଖି ତତ୍କାଳୀନ ନୟାଗଡ଼ ରାଜା ପୁରୁଷୋତ୍ତମ ମାନଧାତାଙ୍କ ନାମରେ ଭଣିତା କରି ଯାଇଅଛନ୍ତି ।" ଇତ୍ୟାଦି ।

ଉପେନ୍ଦ୍ରଭଞ୍ଜ ତାଙ୍କର 'ଶବ୍ଦ କାବ୍ୟ ବନ୍ଧୋଦୟ' ଗ୍ରନ୍ଥରେ 'ଶୋଭାବତୀ' କାବ୍ୟର ନାମୋଲ୍ଲେଖ କରିନାହାନ୍ତି; କିନ୍ତୁ ପଣ୍ଡିତ ବିନାୟକ ମିଶ୍ରଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥରେ ଏହା ଉପେନ୍ଦ୍ରଭଞ୍ଜଙ୍କ ଅନ୍ୟତମ କାଳ୍ପନିକ କାବ୍ୟ ବୋଲି ଉଲ୍ଲେଖ ଅଛି । ସମ୍ଭବତଃ ନୟାଗଡ଼ ରାଜାଙ୍କ ନାମରେ ଭଣିତା କରିଥିବାରୁ କବି ଉପେନ୍ଦ୍ରଭଞ୍ଜ ଏହାକୁ ନିଜ ରଚିତ କାବ୍ୟ-ତାଲିକା ଭିତରକୁ ନେଇ

ନଥିବେ, ବା 'ଶବ୍ଦକାବ୍ୟ କଳ୍ପୋଦୟ' ଲେଖା ହେବା ପରେ ଶୋଭାବତୀ କାବ୍ୟ ରଚନା ହୋଇଥିବ ; କିନ୍ତୁ ଶୋଭାବତୀ କାବ୍ୟର ଭାଷା ଓ ଶୈଳୀ ଦୃଷ୍ଟିରୁ ପ୍ରଥମ କାରଣ ଅଧିକ ସମ୍ଭବ ବୋଲି ମନେହୁଏ । ପୁଣି ମନେହୁଏ, 'ଶବ୍ଦକାବ୍ୟ କଳ୍ପୋଦୟ'ରେ ସେ ବୃହତ୍ କାବ୍ୟ ବ୍ୟତୀତ କ୍ଷୁଦ୍ର କାବ୍ୟମାନଙ୍କର ନାମୋଲ୍ଲେଖ କରିବାକୁ ଇଚ୍ଛିନାହାନ୍ତି ।

ପ୍ରାପ୍ତ ଓ ପ୍ରକାଶିତ ଦୁଇଟି ଛାନ୍ଦ ମଧ୍ୟରୁ ପ୍ରଥମ ଛାନ୍ଦ ଅଷ୍ଟ ବା ଅଷ୍ଟମ ଛାନ୍ଦ ବୋଲି ଉଲ୍ଲେଖ ଅଛି । ଏହା 'ବଙ୍ଗଳାଶ୍ରୀ' ରାଗରେ ରଚିତ । ଦ୍ୱିତୀୟ ପ୍ରକାଶିତ ଛାନ୍ଦଟି 'ଆଷାଢ଼ ଶୁକ୍ଳ' ରାଗରେ ରଚିତ । ଏଥିରେ କେଉଁ ଛାନ୍ଦ ବ୍ୟବହୃତ ତା'ର ଉଲ୍ଲେଖ ନାହିଁ । ଉଭୟ ଛାନ୍ଦରେ ଯଥାକ୍ରମେ ନାୟକ ଓ ନାୟିକାର ବିରହ ବର୍ଣ୍ଣନା ରହିଛି ।

'ଆଷାଢ଼ ଶୁକ୍ଳ' ରାଗରେ ରଚିତ ଦ୍ୱିତୀୟ ପ୍ରକାଶିତ ଛାନ୍ଦରେ ଯଦିଓ ସମାପ୍ତି ସୂଚନା ନାହିଁ, ଅନୁମିତ ହୁଏ ଯେ, ଏହା ଶୋଭାବତୀ କାବ୍ୟର ଶେଷ ଛାନ୍ଦ । କାରଣ ଏଥିରେ ନାୟିକାର ବିରହ ବର୍ଣ୍ଣନା ପରେ ନାୟକର ସ୍ୱଦେଶ ପ୍ରତ୍ୟାବର୍ତ୍ତନ ଓ ନାୟିକା ସଙ୍ଗେ ପୁନର୍ମିଳନର ଚିତ୍ର ପରିବେଷିତ ହୋଇଛି ।

ନୟାଗଡ଼ରେ ତତ୍କାଳୀନ ରାଜା ପୁରୁଷୋତ୍ତମ ମାନଧାତାଙ୍କ ନାମରେ ଦୁଇଟି ଯାକ ଛାନ୍ଦରେ ନିମ୍ନଲିଖିତ ପ୍ରକାର ଭଣିତା ରହିଛି—

"ତମ-ବିପକ୍ଷ ରାଧା-ପତି ସୁନ୍ଦର
ସଦା ଯେ କମଳକର
ସେ କୃଷ୍ଣଚନ୍ଦ୍ର ଭାବ ଛାନ୍ଦ ଭଣିଲେ
**ମାନଧାତା ନୃପବର ।"** (ଅଷ୍ଟମ ଛାନ୍ଦ : ୪୯ ପଦ)

"ପୂର୍ବେ ଯେ ରାମଚନ୍ଦ୍ରରେ ପୂଜିତ
ଲଙ୍କେଶ୍ୱର ନାମ ଲିଙ୍ଗ ଖ୍ୟାତ ॥
ନବଦୁର୍ଗ ପାଳକଭି କରିତା ।
ପରମେଶ ତାଙ୍କ ଇଷ୍ଟ ଦେବତା ॥"
ତାଙ୍କ ପଦତଳ୍ପ, ଭଣିଲେ ପୁରୁଷୋତ୍ତମ ନୃପତି ।

(ଶେଷ ଛାନ୍ଦ : ୨୫ ପଦ)

**ନାମକରଣ :—**

ଭାଷା ଓ ଶୈଳୀ ଦୃଷ୍ଟିରୁ ବିଚାର କଲେ, ନୟାଗଡ଼ ରାଜା ପୁରୁଷୋତ୍ତମ ମାନଧାତାଙ୍କ ନାମରେ ଭଣିତ 'ଶୋଭାବତୀ' କାବ୍ୟ ଯେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର, ଏଥିରେ ସନ୍ଦେହ ନାହିଁ । କିନ୍ତୁ କାବ୍ୟର ନାମ ଯେ ଶୋଭାବତୀ, ଏଥିରେ ଟିକିଏ ସନ୍ଦେହ ଦେଖାଦେଇଥାଏ ! ତେବେ ପ୍ରାପ୍ତ ତାଳପତ୍ର ପୋଥିରେ ଯଦି 'ଶୋଭାବତୀ' ବୋଲି ଉଲ୍ଲେଖ ଥାଏ, ତାହାହେଲେ କୌଣସି ପ୍ରଶ୍ନର ଉଠୁ ନାହିଁ; ଏ କଥା ସ୍ପଷ୍ଟଭାବରେ 'ସୂଚନା' ପତ୍ରରେ ସୂଚାଇ ଦେଇଥିଲେ ଭଲ ହୋଇଥାନ୍ତା । ଏହାର ଶେଷ ଛାନ୍ଦ, ବାର ପଦରେ ନିମ୍ନଲିଖିତ ମତେ ଉଲ୍ଲେଖ ଅଛି—

"ପାସୋରିଲେ ମୋତେ ପ୍ରାଣ ଈଶ୍ୱର ।
ବିଧିରେ ସେ ତ ପୁରୁଷ ଭ୍ରମର ।
**ପଦ୍ମିନୀ** ନାମ ମୋ ସାର୍ଥ ହୋଇଲା ।
ପ୍ରବାସ ରଜନୀ ବିଚ୍ଛେଦ କଲା ।
କରିବି କି ବୁଦ୍ଧି, ଦଇବେ ମୁଁ ତ ହରାଇଲି ନିଧି ।

ମନରେ ପ୍ରଶ୍ନ ଜାଗେ, ଏହା ଉପେନ୍ଦ୍ର ଭଞ୍ଜଙ୍କର ପଦ୍ମିନୀ କାବ୍ୟ ନୁହେଁ ତ ?

## କାହାଣୀ :—

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ସମସ୍ତ କାବ୍ୟର ବର୍ଣ୍ଣନା, ପ୍ରେମ ଚରଣ ଓ ବିଷୟବସ୍ତୁ ଉପସ୍ଥାପନ ପ୍ରାୟ ସମାନ ଧରଣର । ତେଣୁ ପ୍ରତ୍ୟେକ କାବ୍ୟରେ ଏକପ୍ରକାର ଭାବ ଓ ଭାଷା ଅନୁଭୂତ ହୋଇଥାଏ । ପ୍ରେମ ସୁଧାନିଧି, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବିଷୟବସ୍ତୁ ଓ ଘଟଣା ପ୍ରବାହ ପ୍ରାୟ ଏକଧରଣର । କେବଳ ନାମ ଓ ଶବ୍ଦ ବିଭବରେ ସାମାନ୍ୟ ଅଦଳ ବଦଳ ରହିଛି । ତେଣୁ ଆଲୋଚ୍ୟ କାବ୍ୟ 'ଶୋଭାବତୀ'ର ପ୍ରାପ୍ତ ଓ ପ୍ରକାଶିତ ଗ୍ରନ୍ଥ ଦ୍ୱୟରୁ ଶୋଭାବତୀ କାବ୍ୟର କାହାଣୀ ଗ୍ରନ୍ଥନ କରିବାରେ ଅସୁବିଧା ନାହିଁ ।

କବି ଉପେନ୍ଦ୍ର ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥମାନଙ୍କୁ ନାୟିକାର ନାମରେ ଅଭିହିତ କରିଥିବା ଦୃଷ୍ଟିରୁ ଶୋଭାବତୀ (ପଦ୍ମା ?) କାବ୍ୟର ନାୟିକାର ନାମ ଶୋଭାବତୀ । ନାୟିକା ନୃପତି ନନ୍ଦନା ଓ ନାୟକ ରାଜପୁତ୍ର ।

ବିବାହ ପରେ ମିଳନ ସୁଖ ଉପଭୋଗ ଅବସରରେ ନାୟକ ରାଜକୁମାର କାର୍ଯ୍ୟୋପଲକ୍ଷରେ ପ୍ରବାସ ଯାତ୍ରା କଲା । ଫଳରେ ନାୟକ ନାୟିକା ବିରହ ଦୁଃଖରେ ଘାରିହେଲେ ।

ପ୍ରବାସୀ ନାୟକ ନାୟିକାର ରୂପ, ଗୁଣ ଓ ପ୍ରେମ କଥା ଭାବି ଭାବି ମୋହଗଲା । ସଙ୍ଗରେ ଥିବା ସଖାମାନେ ତାଙ୍କୁ ପବନରେ ବିଞ୍ଚିବାକୁ ଲାଗିଲେ ଓ ମୁହଁରେ ଜଳସିଞ୍ଚି ସଚେତନ କଲେ । ଏହି ସମୟରେ ମନ୍ତ୍ରିସୁତ କହିଲା, ହେ ମିତ ! ଆଉ ଦୁଃଖନାହିଁ । କାର୍ଯ୍ୟ ଏବେ ସମାପ୍ତ ହୋଇଛି । ଶୀଘ୍ର ଘରକୁ ଫେରିଯିବା ।

ତେଣେ ବିରହ ବିଧୁରା ନୃପତି ନନ୍ଦନୀର କଥା କହିଲେ ନ ସରେ । ସଖୀମାନେ ତା'ର ବିରହ-ବ୍ୟଥା ଦୂରୀକରଣ ନିମନ୍ତେ ନାନା ପ୍ରକାର ଉପଚାର ପ୍ରୟୋଗ କଲେ । ତଥାପି ସେ ପ୍ରିୟତମର ସଙ୍ଗମ-କାଳୀନ କଥା ସବୁ ମନେପକାଇ ମୋହ ଗଲା । ସଖୀମାନେ ଶେଷରେ ଅମୋଘ ଅସ୍ତ୍ର ପ୍ରୟୋଗ କଲେ । ସେମାନେ ନାୟିକା କାନରେ କହିଲେ, "ଆସୁଅଛନ୍ତି ତୋ' ପ୍ରାଣ ଈଶ୍ୱର ।" ଏକଥା ପଦକ ନାୟିକା ଦେହରେ ଯାଦୁକଲା । ସେ ତତ୍‌କ୍ଷଣାତ୍ ଉଠି ବସିଲା ଓ ଦୀର୍ଘ ନିଃଶ୍ୱାସ ଛାଡ଼ିବାକୁ ଲାଗିଲା ।

ସତକୁ ସତ ସେହି ସମୟରେ ରାଜକୁମାର ରାଜନଅରରେ ପହଞ୍ଚିଲେ । ପ୍ରଥମେ ପିତାଙ୍କୁ ସାକ୍ଷାତ କରି ନମସ୍କାର ଜଣାଇଲେ ଓ ପରେ ନାୟିକାର ଅନ୍ତଃପୁରରେ ପ୍ରବେଶ କଲେ । ନାୟକ ନାୟିକାଙ୍କ ମିଳନକାଳୀନ ବର୍ଣ୍ଣନା କରି କବି ନିମ୍ନଲିଖିତ ମତେ ଉଲ୍ଲେଖ କରିଅଛନ୍ତି—

"ସେ କାନ୍ତ କାନ୍ତା ଶ୍ରୀମୁଖ ଦର୍ଶନେ ।
ରହିଲେ ଦଣ୍ଡେ ସ୍ତୁକତ ନୟନେ ॥
ନାଗରବର ରସେ ହୋଇ ଭୋଳ ।
ବେଗେ କଲା ନିଜ ପ୍ରିୟାକୁ କୋଳ ॥
ଆତୁର ହିଁ ଜଡ଼ି । ହୋଇଲେ ପରସ୍ପରେ ଭିଡ଼ାଭିଡ଼ି ॥ ୨୩ ପଦ ।
ଦରିଦ୍ର ଜନେ ହଜିଲା ରତନ ।
ପାଇଲେ ଯଥା ହରଷ ତା' ମନ ॥
ତହୁଁ ଅଧିକେ ରସ ଜାତ ହୋଇ ।
ପୁଣି ହୋଇଲେ ଚୁମ୍ବ ଢଆଦେଇ ॥
ଗଣ୍ଡି ବେନି ତଟେ । ପକାଇ ଭିନ୍ନ ନୋହିବା ଦଶରେ ॥"